# କାଶୀପୁର

## ଓଡ଼ିଶାର କାଶୀପୁରରେ ଖଣି

## ଓ

## ମାନବିକ ଅଧିକାର ଉଲ୍ଲଙ୍ଘନର ତଦନ୍ତ

ଇଣ୍ଡିଆନ୍ ପିପୁଲ୍ସ ଟ୍ରିବ୍ୟୁନାଲ ତରଫରୁ ଏନ୍‌ଭାରନମେଣ୍ଟ୍
ଆଣ୍ଡ୍ ହ୍ୟୁମାନ ରାଇଟ୍ସର ରିପୋର୍ଟ

ଟ୍ରିବ୍ୟୁନାଲର ମୁଖ୍ୟ
ଜଷ୍ଟିସ୍ ଏସ୍.ଏନ୍. ଭାର୍ଗବ (ଅବସରପ୍ରାପ୍ତ)
ପୂର୍ବତନ ମୁଖ୍ୟ ବିଚାରପତି, ସିକିମ୍ ହାଇକୋର୍ଟ

ଅକ୍ଟୋବର ୨୦୦୬

Kashipur:

An Enquiry into Mining and Human Rights
Violation in Kashipur. Orissa

Indian People's Tribunal on Environment and Human Rights ର ସଂକ୍ଷିପ୍ତ ଓଡ଼ିଆ ରିପୋର୍ଟ

ମୁଳ ରିପୋର୍ଟ ଲେଖା: ଶ୍ରାଓ୍ୱନ୍ତି ରେଡ୍ଡି

ସମ୍ପାଦନ: ମାୟା ନାୟାର

ପ୍ରକାଶକ:Indian People's Tribunal on Environment and
Human Rights, 4th Floor,
C.V.O.D Jain High School,
84 Samuel Street, Dongri,
Mumbai- 400 009, India
Phone: 022-23436692/23439651

ପ୍ରକାଶନ ସମୟ: ଅକ୍ଟୋବର ୨୦୦୬

ଓଡ଼ିଆ ଭାଷାନୁବାଦ: ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦ (PSSP)
କୁଚେଇପଦର, କାଶୀପୁର, ରାୟଗଡ଼ା-୧୫

**ସହଯୋଗ ରାଶି : ୧୫.୦୦ ମାତ୍ର**

## ସୂଚୀ

ପରିବେଶ ଓ ମାନବିକ ଅଧିକାର ସଂକ୍ରାନ୍ତ ଭାରତ ଜନ ଅଦାଲତ (ଆଇ.ପି.ଟି.) ୧୯୯୩ ମସିହାରେ ଦେଶ ମଧ୍ୟରେ ପ୍ରାୟ ୪୦୦ ଓକିଲ, ବିଚାରପତି, ମାନବିକ ଅଧିକାର କର୍ମୀ ଓ ସାମାଜିକ ସଙ୍ଗଠନମାନଙ୍କୁ ନେଇ ଗଠିତ ହୋଇଛି। ଏହା ଏକ ବିକଳ୍ପ 'ଜନ ଅଦାଲତ' ଭାବରେ କାମ କରିଥାଏ। ସମଗ୍ର ଦେଶରେ ବିଭିନ୍ନ ଜନଆନ୍ଦୋଳନ ଉପରେ ହେଉଥିବା ସରକାରୀ ଦମନ ସମ୍ପର୍କରେ ସୁପ୍ରିମକୋର୍ଟ ବା ହାଇକୋର୍ଟର ଅବସରପ୍ରାପ୍ତ ବିଚାରପତିଙ୍କ ଆପତ୍ତି ଅଭିଯୋଗ ଶୁଣିଥାଏ। ଏହି ଟିମ୍‌ରେ ଅବସରପ୍ରାପ୍ତ ବିଚାରପତିଙ୍କ ବ୍ୟତୀତ ଓକିଲ, ସାମ୍ବାଦିକ, ସାମାଜିକ କର୍ମୀ, ଲେଖକ ଓ ଲେଖିକାମାନେ ମଧ୍ୟ ରହିଥାନ୍ତି। ଆଇ.ପି.ଟି.ର ଏହି ରିପୋର୍ଟ ପରେ ସମଗ୍ର ଦେଶରେ ଏପରି ପ୍ରକଳ୍ପ ସମ୍ବନ୍ଧରେ ଜନମତ ସୃଷ୍ଟି ପାଇଁ ସରକାରୀ ନୀତି ଓ ଦୃଷ୍ଟିଭଙ୍ଗିରେ ପରିବର୍ତ୍ତନ ପାଇଁ ମଧ୍ୟ ସାହାଯ୍ୟ କରିଥାଏ।

## କାଶୀପୁରରେ ଅଦାଲତ

ଓଡ଼ିଶାରେ ରାୟଗଡ଼ା ଜିଲ୍ଲା କାଶୀପୁର ବ୍ଲକ୍ ଅଞ୍ଚଳରେ ଉତ୍କଳ ଆଲୁମିନା ଇଣ୍ଟରନ୍ୟାସନାଲ ଲିମିଟେଡ଼୍‌କୁ କାନାଡ଼ାର ଆଲକାନ୍ କମ୍ପାନୀ ଓ ଭାରତର ହିଣ୍ଡାଲ୍‌କୋ କମ୍ପାନୀ (ବିରଲାର ଯୁଗ୍ମ ଉଦ୍ୟୋଗରେ ଗଠିତ) ବାଫଲିମାଳୀଠାରେ ବକ୍ସାଇଟ ଖଣି (ମାଇକଞ୍ଚ ଗ୍ରାମପଞ୍ଚାୟତ ଅଞ୍ଚଳରେ) ଓ ଆଲୁମିନା ପ୍ଲାଣ୍ଟ (କୁଚେଇପଦର/ହାତିଗୁଡ଼ା ଗ୍ରାମ ପଞ୍ଚାୟତ ଅଞ୍ଚଳରେ)କୁ ବିରୋଧ କରି ଆଜକୁ ୧୬ ବର୍ଷ ହେଲାଣି ଲଢ଼େଇ ଚାଲିଛି। ଗଲା ୨୦୦୦ ମସିହା ଡିସେମ୍ବର ୧୬ ତାରିଖରେ ତିନିଜଣ ଆଦିବାସୀ ଏଥିପାଇଁ ପୋଲିସ ଗୁଳିରେ ସହିଦ ହେଲେ। ଗଲା ୨୦୦୫-୦୬ରେ ଓଡ଼ିଶା ସରକାରଙ୍କ ଜିଲ୍ଲା ପ୍ରଶାସନ ଓ ପୋଲିସର ଅତ୍ୟଧିକ ଦମନ ସାରାଦେଶରେ ଚହଳ ପକାଇ ଦେଇଥିଲା।

ଏହି ପରିପ୍ରେକ୍ଷୀରେ ଉକ୍ତ ଜନଆନ୍ଦୋଳନକୁ ନେତୃତ୍ୱ ଦେଉଥିବା ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦ (ପି.ଏସ୍.ଏସ୍.ପି.)ର ଅନୁରୋଧ କ୍ରମେ ଆଇ.ପି.ଟି. ତରଫରୁ ଗଲା ୧-୩ ଅକ୍ଟୋବର, ୨୦୦୫ରେ ଏକ ଦଳ ଉକ୍ତ ଅଞ୍ଚଳ ଗସ୍ତ କରି (କଳାହାଣ୍ଡି ଜିଲ୍ଲା ଲାଞ୍ଜିଗଡ଼ ଅଞ୍ଚଳ ଯେଉଁଠି ବେଦାନ୍ତ କମ୍ପାନୀ ଖଣି ଓ ପ୍ଲାଣ୍ଟ କରିବ ସେ ଅଞ୍ଚଳ ମଧ୍ୟ) ଲୋକଙ୍କ ଆପତ୍ତି, ଅଭିଯୋଗ ଶୁଣିଥିଲେ ଓ ସେ ସମ୍ପର୍କିତ ସମସ୍ତ ରିପୋର୍ଟ ଦାବୀପତ୍ର, ତଥ୍ୟର ତର୍ଜମା ମଧ୍ୟ କରିଥିଲେ।

ଏହି ଦଳରେ ଯେଉଁମାନେ ଥିଲେ ସେମାନେ ହେଲେ ବିଚାରପତି ଏସ୍.ଏନ୍. ଭାର୍ଗବ (ସିକିମ୍ ହାଇକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି), ଦିଲ୍ଲିପ ସିଂ ଭୁରିଆ (ପୂର୍ବତନ ଲୋକସଭା ସଦସ୍ୟ ଓ ଭୁରିଆ କମିଟିର ଅଧ୍ୟକ୍ଷ ମଧ୍ୟ), ଡକ୍ଟର କେ. ବାଲଗୋପାଲ (ଆନ୍ଧ୍ରପ୍ରଦେଶ ହାଇକୋର୍ଟର ଓକିଲ ଓ ଆନ୍ଧ୍ରପ୍ରଦେଶ ହ୍ୟୁମାନରାଇଟସ୍ ଫୋରମର

ସମ୍ପାଦକ), ଶ୍ରୀମତୀ ଏଲିନା ସେନ୍ (ଲେଖିକା ଓ ମହାତ୍ମାଗାନ୍ଧୀ ଆନ୍ତର୍ଜାତିକ ବିଶ୍ୱବିଦ୍ୟାଳୟର ଭ୍ରାମ୍ୟମାଣ ପ୍ରଫେସର), ପ୍ରଫେସର ଏସ୍ ପରଶୁରାମନ୍ (ଟିସ୍‌ର ମୁଖ୍ୟ ଓ ଡ୍ୟାମ୍ ସଂକ୍ରାନ୍ତୀୟ ବିଶ୍ୱ କମିଶନର ସଦସ୍ୟ), ସାଗର ଧାରା (ପରିବେଶବିତ୍), ଡକ୍ଟର ଭି.ଟି. ପଦ୍ମନାଭନ୍ (ଅଣୁବିଜ୍ଞାନୀ)।

ଯେଉଁମାନେ ଆଇ.ପି.ଟି. ସମ୍ମୁଖରେ ନିଜର ବକ୍ତବ୍ୟ ରଖିଥିଲେ ସେମାନେ ହେଲେ ପ୍ରଫେସର ଭଗବତ ରଥ, ମଞ୍ଜୁ ମେନନ୍, ଦେବରଞ୍ଜନ ଷଡ଼ଙ୍ଗୀ, ଭଗବାନ ମାଝୀ, ମୁକ୍ତା ଝୋଡ଼ିଆ, ମନୋହର ଝୋଡିଆ, ବୁଲ୍‌କା ମିଣିଆକ୍କା, ଶଙ୍କର ମୁଦୁଲି, ଅଖିଳ ସାଉନ୍ତା (ପୂର୍ବତନ ଏମ୍.ଏଲ.ଏ), ପ୍ରଫୁଲ୍ଲ ସାମନ୍ତରା, ନବୀନ ନାୟକ, ମାକାରୀ ମାଝୀ, ପ୍ରଦୀପ ମାଝୀ, ସଞ୍ଜୁକ୍ତା ମାଝୀ (ଜିଲ୍ଲା ପରିଷଦ ସଦସ୍ୟା), ସିଦ୍ଧାର୍ଥ ନାୟକ (ସଚେତନ ନାଗରିକ ମଞ୍ଚ, କଳାହାଣ୍ଡି), ନିତ୍ୟାନନ୍ଦ (ଚେନ୍ନାଇ), ଗୁପ୍ତେଶ୍ୱର କୁଅଁର (ଗନ୍ଧମାର୍ଦ୍ଦନ ସୁରକ୍ଷା ଯୁବ ପରିଷଦର ଯୁଗ୍ମ ଆବାହକ), ଜ୍ୟୋତି ଓ ସଚୀନ ('କାଶୀପୁର ସଂଘର୍ଷ କେ ସାଥ', ମୁମ୍ବାଇର ସଦସ୍ୟା ଓ ସଦସ୍ୟ)। ଏହି ଟିମ୍‌ର ଉଦ୍ଦେଶ୍ୟ ଥିଲା- କାଶୀପୁରର ସ୍ଥାନୀୟ ଲୋକଙ୍କ ଜୀବନ, ଜୀବିକା ଓ ସଂସ୍କୃତି ଉପରେ ଉତ୍କଳ ଆଲୁମିନା ପ୍ରକଳ୍ପର ପ୍ରଭାବ ସମ୍ପର୍କରେ ଆକଳନ, ବକ୍ସାଇଟ୍, ଖଣି ଓ ଆଲୁମିନା ପ୍ଲାଣ୍ଟ୍‌ର ପରିବେଶ ଉପରେ ପ୍ରଭାବ ସମ୍ପର୍କରେ ଆକଳନ, ସରକାରୀ ଦମନ ସମ୍ପର୍କରେ ଅନୁଧ୍ୟାନ।

ଇତିମଧ୍ୟରେ ଆଲୁମିନିୟମ୍ ଶିଳ୍ପର ଦ୍ରୁତ ପ୍ରଗତି ଘଟିଛି । ଏହା ଏକ ହାଲୁକା, ଦୃଢ଼ ଓ ବିଦ୍ୟୁତ୍ ପରିବାହକ ଧାତୁ ହୋଇଥିବା ହେତୁ ବିଭିନ୍ନ ଭାବରେ ଏହାର ବ୍ୟବହାର ବଢ଼ିବାରେ ଲାଗିଛି । ପ୍ୟାକେଜ୍, ଇଲେକ୍ଟ୍ରି, ଅଟୋମୋବାଇଲ୍, ଉଡ଼ାଜାହାଜ, ପ୍ରତିରକ୍ଷା ଓ ଯୁଦ୍ଧ ଉପକରଣ ତିଆରି ହେଉଥିବା ଶିଳ୍ପ ଉଦ୍ୟୋଗରେ ଆଲୁମିନିୟମର ବ୍ୟବହାର ବଢ଼ିବାରେ ଲାଗିଛି । ସେଥିପାଇଁ ଏହାର ମୂଲ୍ୟ ଯାହା ୨୦୦୨ ମସିହାରେ ଏକ ଟନ୍ ପିଛା ୧୬୦ ଆମେରିକୀୟ ଡଲାର (ପ୍ରାୟ ୮୦୦୦ ଟଙ୍କା ଥିଲା), ତାହା ୨୦୦୪ ବେଳକୁ ୫୦୦ ଆମେରିକୀୟ ଡଲାର (ପ୍ରାୟ ୨୫,୦୦୦ ଟଙ୍କା) ହୋଇଯାଇଛି । ଏହି ଉଦ୍ୟୋଗରେ ଅତ୍ୟଧିକ ଲାଭ ହେଉଥିବା ହେତୁ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଆଲୁମିନିୟମ୍ ଉଦ୍ୟୋଗ ପ୍ରତି ଆକର୍ଷିତ ହେଉଛନ୍ତି ।

ଆମେ ସମସ୍ତେ ଜାଣୁ ବକ୍ସାଇଟ୍‌ରୁ ପ୍ରଥମେ ଆଲୁମିନା ଓ ପରେ ଆଲୁମିନିୟମ୍ ତିଆରି ହୋଇଥାଏ । ଏହି ବକ୍ସାଇଟ୍ ସମଗ୍ର ଭାରତରେ ପ୍ରାୟ ୧୬୦୦ ନିୟୁତ ଟନ୍ ଗଚ୍ଛିତ ଅଛି । ସେ ମଧ୍ୟରୁ ଓଡ଼ିଶାର କୋରାପୁଟ-ବଲାଙ୍ଗିର-କଳାହାଣ୍ଡି ଜିଲ୍ଲାରେ କେବଳ ୭୦% ରହିଛି । ପୂର୍ବରୁ ପଞ୍ଚପଟମାଳୀ ବକ୍ସାଇଟ୍ ନେଇ ନାଲ୍‌କୋ କାମ ଆରମ୍ଭ କରିଛି । ଏହା ପରେ ୧୯୯୩ ମସିହାରେ ଉତ୍କଳ ଆଲୁମିନିୟମ ସହିତ ଓଡ଼ିଶା ସରକାରଙ୍କ ଚୁକ୍ତି ହୋଇଛି । ସରକାର ନୂତନ ଶିଳ୍ପନୀତିରେ ଆୟକର, ବାଣିଜ୍ୟକର ଛାଡ଼ ଓ ବିଭିନ୍ନ ସବସିଡ଼ି ଘୋଷଣା କରିବା ହେତୁ ଅଧିକ ବହୁରାଷ୍ଟ୍ରୀୟ କମ୍ପାନୀ ଏବେ ଓଡ଼ିଶା ମାଟିରେ ଧାଡ଼ି ଲଗାଇଛନ୍ତି ।

## ଉତ୍କଳ ଆଲୁମିନା ଓ କାଶୀପୁର

ଉତ୍କଳ ଆଲୁମିନା ଇଣ୍ଟରନ୍ୟାସନାଲ ଲିମିଟେଡ୍ ଏକ ଯୁଗ୍ମ ଉଦ୍ୟୋଗ କମ୍ପାନୀ ଯାହାକି କାଶୀପୁର ପ୍ରକଳ୍ପ ପାଇଁ ଗଠିତ ହୋଇଥିଲା । ଏଥିରେ ପ୍ରଥମେ ଆଲକାନ୍ (କାନାଡ଼ା), ଇଣ୍ଡାଲ୍ (ଭାରତ), ଟାଟା (ଭାରତ) ଓ ହାଇଡ୍ରୋ (ନରୱେ) କମ୍ପାନୀ ସଦସ୍ୟ ଥିଲେ । କ୍ରମଶଃ ଲଢ଼େଇ ଚାଲିବା ହେତୁ ଟାଟା ଓ ହାଇଡ୍ରୋ କମ୍ପାନୀ ଓହରିଗଲେ ଓ ପରେ ଇଣ୍ଡାଲ୍ କମ୍ପାନୀ ହିଣ୍ଡାଲ୍‌କୋ (ବିରଳା ଗ୍ରୁପ୍)କୁ ବିକ୍ରି ହୋଇଗଲା । ଏବେ ତେଣୁ ହିଣ୍ଡାଲ୍‌କୋ (ଭାରତ) ଓ ଆଲକାନ୍ (କାନାଡ଼ା) ଯଥାକ୍ରମେ ୫୫:୪୫ ଅଂଶଧନ କ୍ରମରେ ଉତ୍କଳ ଆଲୁମିନା କମ୍ପାନୀର ମାଲିକ ସାଜିଛନ୍ତି ।

ଏହି କମ୍ପାନୀ ବାଫଲିମାଳୀରୁ ବକ୍ସାଇଟ ଖନନ କରିବ। ବର୍ଷକୁ ପ୍ରାୟ ୮ ନିୟୁତ ଟନ୍ ବକ୍ସାଇଟ୍ ଖୋଳି ସେଥିରୁ ପ୍ରାୟ ତିନି ନିୟୁତ ଟନ୍ ଆଲୁମିନା ଉତ୍ପାଦନ କରିବ ଓ ସମସ୍ତ ଆଲୁମିନାକୁ ବିଦେଶକୁ ରପ୍ତାନୀ କରିବ। ତେଣୁ ବାଫଲିମାଳିରେ ଥିବା ୧୯୫ ନିୟୁତ୍ ଟନ୍ ବକ୍ସାଇଟ୍ ସରିବା ପାଇଁ ମାତ୍ର ୨୪-୨୫ ବର୍ଷ ଲାଗିବ। ନିଜର ଆଲୁମିନା ପ୍ଲାଣ୍ଟ୍ ପାଇଁ ୨୮୦୦ଏକର ଜମି ଆବଶ୍ୟକ ହେଉଛି। ସେଥିରୁ ୨୧୫୩ ଏକର ଜମି ନିଜସ୍ୱ ଥିବାବେଳେ ମାତ୍ର ୭୧୨ଏକର ସରକାରୀ ଜମି। ସେଥିମଧ୍ୟରୁ ୯୨ଏକର ଅଣ ଜଙ୍ଗଲ ଜମି ଓ ୨୦୬ ଏକର ଗ୍ରାମ୍ୟ ଜଙ୍ଗଲ ଜମି।

୨୦୦୦ ମସିହାର ହିସାବ ଅନୁସାରେ କମ୍ପାନୀ ୪୫୦୦କୋଟି ଟଙ୍କା ଖର୍ଚ୍ଚ କରିବ। ବର୍ତ୍ତମାନ ଆଲୁମିନାର ଆନ୍ତର୍ଜାତିକ ବଜାରରେ ଏହାର ଦରକୁ ନେଇ ହିସାବ କଲେ କମ୍ପାନୀ ୨୪-୨୫ ବର୍ଷ ମଧ୍ୟରେ ପ୍ରାୟ ୨,୮୦,୦୦୦ କୋଟି ଟଙ୍କା ଲାଭ କରିବ ଯାହାକି ସମୁଦାୟ ପୁଞ୍ଜିର ୬୩୦୦ ଗୁଣ ଅଧିକ। ଓଡ଼ିଶା ସରକାରଙ୍କୁ ବକ୍ସାଇଟ୍‌ରୁ ଟନ୍ ପିଛା ୮୫ ଟଙ୍କା ହିସାବରେ ୧୪୦୦ କୋଟି ଟଙ୍କା ସେହି ସମୟ ମଧ୍ୟରେ ରାଜସ୍ୱ ମିଳିବ। ଏଥିପାଇଁ ଓଡ଼ିଶାସରକାରଙ୍କୁ ପ୍ରକଳ୍ପ ପାଇଁ ରାସ୍ତା, ରେଲୱେ, ପୋଲିସ ଥାନା, ଡ୍ୟାମ୍ କରିବାକୁ ହେବ, ରେଲୱେ ଲାଇନ୍ ପାଇଁ ଓଡ଼ିଶା ସରକାର ୩୦୦ କୋଟି ଟଙ୍କା ଧାର ମଧ୍ୟ କରିସାରିଲେଣି। ହେଲେ ଏ ପର୍ଯ୍ୟନ୍ତ ଏହି ପ୍ରକଳ୍ପର ଅର୍ଥନୈତିକ ସମୀକ୍ଷା ହୋଇନାହିଁ।

ସ୍ଥାନୀୟ ଲୋକଙ୍କ ଆନ୍ଦୋଳନ ହେତୁ କମ୍ପାନୀ କାମ ଆରମ୍ଭ କରିପାରି ନାହିଁ। ସେଥିପାଇଁ ୨୦୦୪-୦୫ରେ ପୋଲିସ ତରଫରୁ ଅତ୍ୟଧିକ ଦମନ କରାଗଲା। ଯାହାଦ୍ୱାରା କି ମାନବିକ ଅଧିକାର ବହୁ ପରିମାଣରେ ଉଲ୍ଲଂଘନ କରାଗଲା। ଏ ସମ୍ପର୍କରେ ପି.ଏସ୍.ଏସ୍.ପି. ତରଫରୁ ଜାତୀୟ ମାନବିକ ଅଧିକାର କମିଶନ, ଆଦିବାସୀ କମିଶନଙ୍କୁ ଦାବୀପତ୍ର ଦିଆଯାଇଛି। ଗଲା ୫ ମାର୍ଚ୍ଚ୨୦୦୫ରେ ଦିଲ୍ଲୀରେ ଏକ ଧାରଣା ଦିଆଯାଇ ଭାରତର ରାଷ୍ଟ୍ରପତିଙ୍କୁ ଦାବୀପତ୍ର ଦିଆଯାଇଛି।

ଇତିମଧ୍ୟରେ ନାଲ୍‌କୋ ନିଜର ଉତ୍ପାଦନ ବହୁତ ଦିନରୁ କରିସାରିଲାଣି। ଲାଞ୍ଜିଗଡ଼ରେ ବେଦାନ୍ତ କମ୍ପାନୀ ଜମି ଅକ୍ତିଆର କରି ଆଲୁମିନା ପ୍ଲାଣ୍ଟ ବସାଉଛି। ଏହି ଦୁଇ ପ୍ରକଳ୍ପକୁ ଆଧାର କରି ଟ୍ରିବ୍ୟୁନାଲ ଉତ୍କଳ ଆଲୁମିନା ପ୍ରକଳ୍ପକୁ ସମୀକ୍ଷା କରିବାକୁ ଚେଷ୍ଟା କରିଛି। ଟ୍ରିବ୍ୟୁନାଲ ପାଞ୍ଚଟି ଅଧ୍ୟାୟ ମାଧ୍ୟମରେ ସମଗ୍ର କଥା କହିବା ସହିତ ଶେଷରେ ନିଜର Recomendation ରଖିଛି।

## ବେଦାନ୍ତ / ଷ୍ଟେରିଲାଇଟର ନିୟମଗିରି ଖଣି (ଲାଞ୍ଜିଗଡ଼ ବ୍ଲକ୍, କଳାହାଣ୍ଡି ଜିଲ୍ଲା)

ନିୟମଗିରି ପାହାଡ଼ରେ ୭.୩ କୋଟି ଟନ୍ ବକ୍ସାଇଟ୍ ଗଚ୍ଛିତ ଅଛି। ଷ୍ଟେରିଲାଇଟ୍ / ବେଦାନ୍ତ କମ୍ପାନୀ ବର୍ଷକୁ ୩୦ ନିୟୁତ ଟନ୍ ବକ୍ସାଇଟ୍ ନେଇ ସେଥିରେ ଏକ ନିୟୁତ ଟନ୍ ଆଲୁମିନା ଉତ୍ପାଦନ କରିବ। ନିୟମଗିରିରୁ ସମଗ୍ର ବକ୍ସାଇଟ୍ ସରିବା ପାଇଁ ୨୩ବର୍ଷ ଲାଗିବ। ନିୟମଗିରି ମଧ୍ୟରେ ଥିବା ୧୦୭୩.୪ ହେକ୍ଟର ଜମିରୁ ୫୦୬.୬୩୮ ହେକ୍ଟର କେବଳ ରିଜର୍ଭ ଜଙ୍ଗଲ ଅଟେ। ଏହା ବ୍ୟତୀତ ୧୭୯୮.୫୪ ହେକ୍ଟର ଜମିରେ ବେଦାନ୍ତ କମ୍ପାନୀ ନିଜର ଆଲୁମିନା ପ୍ଲାଣ୍ଟ୍ ତିଆରି କରିବ। ଏଥିରୁ ୧୧୦୯ ହେକ୍ଟର ଜମି ନିଜସ୍ୱ ଅଟେ। ଏହି ପ୍ରକଳ୍ପ ଦ୍ୱାରା କମ୍ପାନୀର ତଥ୍ୟ ଅନୁସାରେ ୬୦ ପରିବାର ବିସ୍ଥାପିତ ହେବେ ଓ ୧୨ଖଣ୍ଡ ଗ୍ରାମର ୩୦୨ ପରିବାର କ୍ଷତିଗ୍ରସ୍ତ ହେବେ। ଏହା ବ୍ୟତୀତ, ନିୟମଗିରି ପାହାଡ଼ରେ ଥିବା ଅତି ପ୍ରାଚୀନ ଜୀବନ ପ୍ରଣାଳୀ ଥିବା ଡଙ୍ଗରିଆ କନ୍ଧମାନେ ମଧ୍ୟ ବିସ୍ଥାପିତ ହେବେ। ସରକାରଙ୍କ ରାଜସ୍ୱ ବିଭାଗ ଦ୍ୱାରା ସେହିସବୁ ଗ୍ରାମ ଚିହ୍ନଟ ହୋଇନଥିବା ହେତୁ ଏବେ ବି ସେହି ସବୁ ଗାଁକୁ ପ୍ରକଳ୍ପ କ୍ଷତିଗ୍ରସ୍ତ ତାଲିକାରେ ନିଆଯାଉ ନାହିଁ। ଏହି ପ୍ରକଳ୍ପରେ ୪୫୦ କୋଟି ଟଙ୍କା ପୁଞ୍ଜି ଖଟାଯିବ ଓ ଏହା ମାତ୍ର ୨୫୦ ଲୋକଙ୍କୁ ପ୍ରତ୍ୟକ୍ଷ ଭାବରେ ଓ ୫୦୦ ଲୋକଙ୍କୁ ପରୋକ୍ଷ ଭାବରେ ନିଯୁକ୍ତି ଦେବ। ଏହି ପ୍ରକଳ୍ପକୁ ବିରୋଧ କରି 'ନିୟମଗିରି ସୁରକ୍ଷା ସମିତି' ତରଫରୁ ଟ୍ରିବ୍ୟୁନାଲ ସାମ୍ନାରେ ନିଜର ବକ୍ତବ୍ୟ ରଖାଯାଇଥିଲା।

## କୋରାପୁଟ ଜିଲ୍ଲାର ଦାମନଯୋଡ଼ିଠାରେ ନାଲ୍କୋ ପ୍ଲାଣ୍ଟ୍

ନାଲ୍କୋର ବକ୍ସାଇଟ୍ ଖଣି ଭାରତର ଏକ ବୃହତ୍ତମ ବକ୍ସାଇଟ୍ ଖଣି ଓ ଏହା କାଶୀପୁର ଠାରୁ ମାତ୍ର ୧୦୦କି.ମି. ଦୂରତାରେ ରହିଛି। ୨୦୦୨ ମସିହାରେ କମ୍ପାନୀ ପ୍ରାୟ ୧୨୦ ନିୟୁତ ଆମେରିକୀୟ ଡଲାର୍ ଲାଭ କରିଛି। ମାତ୍ର ପ୍ରକଳ୍ପ ପାଖରେ ଥିବା ବହୁ ପରିବାର କମ୍ପାନୀ ଦ୍ୱାରା କୌଣସି ଉପାୟରେ ଉପକୃତ ହୋଇନାହାନ୍ତି। ନାଲ୍କୋ ବହୁତ କମ୍‌ଲୋକଙ୍କୁ ଥଇଥାନ କରିଛି। ମାତ୍ର ଏବେ ନାଲ୍କୋ ନିଜର ଆବର୍ଜନାକୁ ପାଖ ଜାଗା ଦେଖି ଓ ନଦୀରେ ମଧ୍ୟ ଛାଡୁଛି। ତେଣୁ ଏହି ପ୍ରକଳ୍ପ ଦ୍ୱାରା ବହୁତ ପ୍ରକାରର ସ୍ୱାସ୍ଥ୍ୟଗତ ସମସ୍ୟା ଦାମନଯୋଡ଼ି ଅଞ୍ଚଳରେ ଦେଖାଗଲାଣି। ତଥାପି କମ୍ପାନୀ ଏବେ ଏହାର ଆଲୁମିନା ଉତ୍ପାଦନ ୨,୩୦,୦୦୦ ଟନ୍‌ରୁ ୩,୪୫,୦୦୦ ଟନ୍‌କୁ ବୃଦ୍ଧି କରିଛି।

# କାଶୀପୁର ଆନ୍ଦୋଳନର ଇତିହାସ

୧୯୯୧ – ନୂତନ ଅର୍ଥନୀତି ଓ ଜଗତୀକରଣ ପରିପ୍ରେକ୍ଷୀରେ ପ୍ରଥମ କରି ଭାରତର ବକ୍ସାଇଟ୍ ଖଣି କ୍ଷେତ୍ରରେ ବିଦେଶୀ ପୁଞ୍ଜିକୁ ସ୍ୱାଗତ କରାଗଲା।

୧୯୯୨ – ଓଡ଼ିଶା ଖଣି କମିଶନ୍‌କୁ କାଶୀପୁର ଅଞ୍ଚଳରେ ୨୦୫୪ ବର୍ଗ କି.ମି. ଜମି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଲିଜ୍ ଦେବା ପାଇଁ ହସ୍ତାନ୍ତର କରାଗଲା।

୧୯୯୩ – ଉତ୍କଳ ଆଲୁମିନା ଇଣ୍ଟରନ୍ୟାସନାଲ ଲିଃ ଟାଟା, ନରଓ୍ୱେର ହାଇଡ୍ରୋ, କାନାଡ଼ାର ଆଲକାନ୍ ଓ ଭାରତର ଇଣ୍ଡାଲ୍ କମ୍ପାନୀ ଯୁଗ୍ମ ଉଦ୍ୟୋଗ ଦ୍ୱାରା ଗଠିତ କାଶୀପୁରକୁ ଆସିଲା।

୧୬ ଜାନୁଆରୀ ୧୯୯୪ – UAIL କେନ୍ଦ୍ର ଖଣି ଓ ପରିବେଶ ମନ୍ତ୍ରଣାଳୟକୁ ଖଣି ଅନୁମତି ପାଇଁ ଆବେଦନ

୪ଜୁଲାଇ ୧୯୯୪– UAIL କୁ ଖଣି ଅନୁମତି ଦୁଇବର୍ଷ ପାଇଁ ମିଳିଲା

୧୯୯୫ ଜୁନ୍ – ଓଡ଼ିଶା ରାଜ୍ୟ ପ୍ରଦୁଷଣ ବୋର୍ଡ଼ UAILକୁ ନିଜର ଅନୁମତି ଦେଲେ

୨୫ ସେପ୍ଟେମ୍ବର ୧୯୯୫ – UAILକୁ କେନ୍ଦ୍ର ଜଙ୍ଗଲ ଓ ପରିବେଶ ମନ୍ତ୍ରଣାଳୟ ତରଫରୁ ଖଣି ଅଞ୍ଚଳରେ ୫ବର୍ଷ ପାଇଁ ପରିବେଶ ଅନୁମତି

୨୭ ସେପ୍ଟେମ୍ବର ୧୯୯୫ – UAILକୁ ସେହି ମନ୍ତ୍ରଣାଳୟ ପ୍ଲାଣ୍ଟ୍ ପାଇଁ ପରିବେଶ ଅନୁମତି

୧୯୯୬ – UAIL ର ତଥ୍ୟ ଅନୁସାରେ ୧୪୭ ପରିବାର କ୍ଷତିଗ୍ରସ୍ତ ହେବେ

- ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦ (PSSP) ର ଗଠନ
- UAIL କୁ ଦିଆଯାଇଥିବା ଖଣି ଲିଜ୍ ଦୁଇବର୍ଷ ମଧ୍ୟରେ କାମ କରିନପାରିବା ହେତୁ ବାତିଲ
- ବିସ୍ଥାପିତଙ୍କ ପାଇଁ UAIL ତରଫରୁ ଥଇଥାନ ନୀତି

୧୯୯୮ – UAIL ନିଜର କାମ ପାଇଁ URDS ଗଠନ ଓ ପ୍ରକଳ୍ପ ଅଞ୍ଚଳରେ ଉନ୍ନତିମୂଳକ କାମ ଆରମ୍ଭ

୫ ଜାନୁଆରୀ ୧୯୯୮ – କୁଚେଇପଦର ଠାରେ UAIL ର ଗାଡ଼ିକୁ ରୋକିବା ପାଇଁ ଗାର୍ଡ଼ ଓ ପୋଲିସର ଲାଠିଚାର୍ଜ, ୫୦ ଲୋକ ଆହତ

୨୯ ମାର୍ଚ୍ଚ ୧୯୯୮ – UAILର ଭଡ଼ାଟିଆ ଗୁଣ୍ଡାଙ୍କ ଦ୍ୱାରା ସହିଦ ଲକ୍ଷ୍ମଣ ନାୟକ ଦିବସରେ କାଶୀପୁରଠାରେ PSSP ର ଲୋକଙ୍କୁ ମାଡ଼

୧୯୯୯ – UAIL କୁ ସମର୍ଥନ କରି ସର୍ବଦଳୀୟ କମିଟି ଗଠନ। ଏଥିରେ ବିଜୁଜନତା ଦଳ, କଂଗ୍ରେସ ଓ ଭାରତୀୟ ଜନତା ପାର୍ଟିର ଯୋଗଦାନ

୨୪ ସେପ୍ଟେମ୍ବର ୨୦୦୦- UAIL ରେ ଖଣିପାଇଁ ଦିଆଯାଇଥିବା ପରିବେଶ ଅନୁମତି ପତ୍ରର ସମୟସୀମା ଶେଷ

୧୬ ଡିସେମ୍ବର ୨୦୦୦- ମାଇକଞ୍ଚ ଠାରେ ପୋଲିସ ଗୁଳିଚାଳନାରେ ତିନିଜଣ ଆଦିବାସୀ ସହିଦ , ୮ଜଣ ଆଘାତ ପାଇଲେ

୩୦ ଡିସେମ୍ବର ୨୦୦୦ – ରାୟଗଡ଼ା ଜିଲ୍ଲାପାଳଙ୍କ ଦ୍ୱାରା UAIL ପ୍ରକଳ୍ପର ୨ଟି ପଞ୍ଚାୟତରେ ଗ୍ରାମସଭା ଅନୁଷ୍ଠିତ। ସମସ୍ତ ଗ୍ରାମସଭା (କୁଚେଇପଦର, ଟିକିରି, ମାଇକଞ୍ଚ, କୋଡ଼ିପାଲି, ଗୋରଖପୁର) ରେ UAIL ନିର୍ଦ୍ଦେଶରେ ପ୍ରସ୍ତାବ ଗୃହୀତ

୨୦୦୧ – ନରୱେର ହାଇଡ୍ରୋ ଓ ଟାଟା ଉତ୍କଳ ଆଲୁମିନା କମ୍ପାନୀ ଓହରିଗଲେ। UAIL ପରେ ଆଲକାନ୍ (୪୫%) ଓ ହିଣ୍ଡାଲ୍‌କୋ (୫୫%) ରହିଲେ

୩୦ ଜାନୁଆରୀ ୨୦୦୧– କାଶୀପୁର ଠାରେ ଗୁଳିକାଣ୍ଡ ବିରୁଦ୍ଧରେ ସାଧାରଣ ସଭା। ପ୍ରାୟ ୧୦,୦୦୦ ଲୋକ ର୍‍ୟାଲିରେ ଭାଗ ନେଲେ।

୨୦ ଜାନୁଆରୀ ୨୦୦୧ – ଓଡ଼ିଶା ହାଇକୋର୍ଟର ଜଜ୍ ପି.କେ. ମିଶ୍ରଙ୍କ ଦ୍ୱାରା ମାଇକଞ୍ଚ ଗୁଳିକାଣ୍ଡର ତଦନ୍ତ ଆରମ୍ଭ

୧୬ ଅକ୍ଟୋବର ୨୦୦୩- ଓଡ଼ିଶା ସରକାରଙ୍କ ପି.କେ. ମିଶ୍ର କମିଶନ ରିପୋର୍ଟ ଖବରକାଗଜରେ ପ୍ରକାଶିତ। ପୋଲିସକୁ ଏଥିପାଇଁ ଦାୟୀ କରାଯାଇଛି।

୧୬ ଡିସେମ୍ବର ୨୦୦୩ – ଆଲ୍‌କାନ କମ୍ପାନୀକୁ ବିରୋଧ କରି କାଶୀପୁର ଆନ୍ଦୋଳନକୁ ସମର୍ଥନ କରି କାନାଡ଼ାର ମଣ୍ଟ୍ରିଲ୍ ସହରରେ ଧାରଣା।

୧–୩ ସେପ୍ଟେମ୍ବର ୨୦୦୪ – ମଣ୍ଟ୍ରିଲ୍ ସହରରେ କାଶୀପୁର ସପକ୍ଷରେ କର୍ମଶାଳା

୧୯ ଅକ୍ଟୋବର ୨୦୦୪ – UAIL କୁ ବିରୋଧ କରି PSSP ତରଫରୁ ଟିକିରି ଠାରେ ବିରାଟ ର୍‍ୟାଲି

୨୫ ନଭେମ୍ବର ୨୦୦୪ – ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଖଣି ବିରୋଧୀ ଶକ୍ତିକୁ ଦମନ କରିବା ପାଇଁ ଧମକ

୨୮ ନଭେମ୍ବର ୨୦୦୪ – UAIL କୁ ସମର୍ଥନ କରି ସମସ୍ତ ରାଜନୈତିକ ଦଳର କର୍ମୀ ସମ୍ମିଳନୀ। ଏଥିରେ ବିଭିନ୍ନ ସ୍ଥାନରୁ ଲୋକଙ୍କୁ ବୁହା ହୋଇଥିଲା ବୋଲି ଅଭିଯୋଗ ହୁଏ

୨୦୦୪ ଡିସେମ୍ବର - କରୋଳ ଠାରେ ପୋଲିସ ଫାଣ୍ଡିକୁ ବିରୋଧ କରି ଲୋକଙ୍କ ବିକ୍ଷୋଭ। ପୋଲିସର ମାତ୍ରାଧିକ ଲାଠିଚାର୍ଜ ଓ ଦ୍ୱିତୀୟ ଥର ପାଇଁ ଦମନ ଆରମ୍ଭ

୫ଡିସେମ୍ବର ୨୦୦୪- ସି.ଆର୍.ପି.ଏଫ୍‌ର ବାଘ୍ରିଝୋଲା ଗ୍ରାମ ଫ୍ଲାଗ୍ ମାର୍ଚ୍ଚ

୧୬ ଡିସେମ୍ବର ୨୦୦୪ - ସହିଦ ଦିବସକୁ ସମର୍ଥନ କରି ଆସୁଥିବା ବେଳେ ଦୁଇଜଣ ବିଧାୟକ(ନାରାୟଣ ରେଡ୍ଡି ଓ ଶମ୍ଭୁନାଥ ନାୟକ) ଓ ଅନ୍ୟ ରାଜନୈତିକ ନେତା ଯଥା ଗଣନାଥ ପାତ୍ର ଓ ଅନ୍ୟମାନେ UAILର ଗୁଣ୍ଡାଙ୍କ ରୋଷର ଶିକାର। ପୋଲିସ ନୀରବ

୨୦୦୫ - ବିଭିନ୍ନ ସଙ୍ଗଠନ, ସଂସ୍ଥା ଓ ଅନୁଷ୍ଠାନଙ୍କ ଦ୍ୱାରା କାଶୀପୁର ଅଞ୍ଚଳ ଗସ୍ତ ଓ ପରିସ୍ଥିତି ସମ୍ପର୍କରେ ନିଜର ରିପୋର୍ଟ ପ୍ରଦାନ

୨୫ ମେ ୨୦୦୫ - PSSP ତରଫରୁ ପୋଲିସ ଦମନ ବିରୁଦ୍ଧରେ ଟିକିରି ଠାରେ ର୍‍ୟାଲି

୧୫ ଜୁନ୍ ୨୦୦୫ - ଗୁରୁପୁଟ ଠାରେ PSSP କମିଟି ମିଟିଂ ଚାଲିଥିଲା ବେଳେ ପୋଲିସର ଲାଠିଚାର୍ଜ

୧-୩ ଅକ୍ଟୋବର ୨୦୦୫ - ଆଇ.ପି.ଟି ଦ୍ୱାରା କୁଚେଇପଦର ଠାରେ ଟ୍ରିବ୍ୟୁନାଲ

୧୬ ଡିସେମ୍ବର ୨୦୦୫ - କୁଚେଇପଦର ଠାରେ ପଞ୍ଚମ ସହିଦ ଦିବସ ପାଳନ

୫ଏପ୍ରିଲ ୨୦୦୬ - ବିଧାନସଭାର ଗୃହ କମିଟିର ରିପୋର୍ଟ ଏଥିରେ UAILର କୌଣସି ଅନୁମତି ନଥିବା କଥା ପ୍ରକାଶିତ

୧୪ ଜୁଲାଇ ୨୦୦୬ - ଜର୍ମାନର ଡିଡ୍ରେଲବର୍ଗ ଓ ବର୍ଲିନ୍ ସହରରେ ଆଲକାନ୍ ବିରୋଧରେ କାଶୀପୁର ଆନ୍ଦୋଳନକୁ ସମର୍ଥନ କରି ଧାରଣା।

'ଯଦି ତୁମର ଜମି ଉପରେ ଅଧିକାର ଅଛି ତେବେ କହିଦିଅ ଯେ ତୁମ ହାତକୁ କେତେବେଳେ ଓ କିପରି ଗଲା ?' ବୁଲ୍‌କା ମିଣିଆଙ୍କ ଟ୍ରିବ୍ୟୁନାଲ ସମ୍ମୁଖରେ ଦେଇଥିବା ବକ୍ତବ୍ୟ।

ଏହା ଏକ ସତକଥା ଯେ ସମ୍ବିଧାନର ପଞ୍ଚମ ଅନୁଚ୍ଛେଦରେ ତାଲିକାଭୁକ୍ତ ଅଞ୍ଚଳ ମଧ୍ୟରେ କାଶୀପୁର ଅନ୍ୟତମ। ଏହା ଆଦିବାସୀ ବହୁଳ ହେତୁ ସମ୍ବିଧାନର ସ୍ୱତନ୍ତ୍ର ନିୟମ ଏଠାରେ ଲାଗୁ ହେବ। ଏହା ସହିତ ଭାରତ ସରକାର ଓ ଓଡ଼ିଶା ସରକାରଙ୍କ ବିଭିନ୍ନ ନିୟମ କାନୁନ ମାଧ୍ୟମରେ ଆଦିବାସୀର ସ୍ୱାର୍ଥକୁ ସୁରକ୍ଷା ଦେବାପାଇଁ ଉଦ୍ୟମ କରାଯାଇଛି। ମାତ୍ର ଉତ୍କଳ ଆଲୁମିନାକୁ ଜାଗା ଦେଲା ବେଳେ ବର୍ତ୍ତମାନର ଓଡ଼ିଶା ସରକାର ଏ ସମସ୍ତ ନିୟମକୁ ବହୁସ୍ଥାନରେ ଭଙ୍ଗ କରାଯାଇଛି। ଯେମିତିକି-

(କ) ଅନୁସୂଚୀତ ଅଞ୍ଚଳରେ ଜମି ଲିଜ୍ ଦେବା ସମୟରେ ନିୟମ।

(ଖ) ଗ୍ରାମସଭା ସହିତ ପରାମର୍ଶ।

(ଗ) ଲିଜ୍ ଦେବା ସମୟରେ ସାଧାରଣ ନିୟମର ବ୍ୟତିକ୍ରମ।

## ମାଇନିଂ ଲିଜ୍

ଟ୍ରିବ୍ୟୁନାଲ ତରଫରୁ ଉତ୍କଳ ଆଲୁମିନା କମ୍ପାନୀକୁ ଦିଆଯାଉଥିବା ମାଇନିଂ ଲିଜ୍‌କୁ ଦୁଇଟି ଦିଗରୁ ତର୍ଜମା କରାଯାଇଥିଲା। ପ୍ରଥମରେ, ଅନୁସୂଚୀତ ଅଞ୍ଚଳରେ ଦିଆଯାଇଥିବା ଜମି ଲିଜ୍। ସମ୍ବିଧାନର ପଞ୍ଚମ ଅନୁଚ୍ଛେଦ ଓ ଓଡ଼ିଶା ସରକାରଙ୍କ ଆଦିବାସୀ ଅଞ୍ଚଳରେ ଟ୍ରାନ୍ସଫର ଅଫ୍ ଇମ୍‌ମୁଭେବୁଲ ପ୍ରପର୍ଟି ଆକ୍ଟ ୧୯୫୬ ଅନୁସାରେ ଆଦିବାସୀ ଜମିକୁ ଅଣ ଆଦିବାସୀ ଜମିରେ ହସ୍ତାନ୍ତରକୁ ବିରୋଧ କରାଯାଇଛି। ସୁପ୍ରିମକୋର୍ଟର ସମତା ରାୟ ଅନୁସାରେ ନିଜେ ସରକାର ଏପରିକି କମ୍ପାନୀ ଅଣ ଆଦିବାସୀ ଅଟନ୍ତି। ଏଥିରେ ଆଦିବାସୀ ଜମିକୁ ସରକାର ବା କମ୍ପାନୀକୁ ହସ୍ତାନ୍ତର କରିବାକୁ ବିରୋଧ କରାଯାଇଛି। ମାତ୍ର ଓଡ଼ିଶା ସରକାର ସମତା ରାୟ ଓଡ଼ିଶାରେ ଲାଗୁ ହେବ ନାହିଁ ବୋଲି କହିପାରିବେ ନାହିଁ। କାଶୀପୁର ଅଞ୍ଚଳରେ ପ୍ରଥମେ ଓଡ଼ିଶା ସରକାର ଜମି କିଣି ପରେ ଏହା ଉତ୍କଳ ଆଲୁମିନା କମ୍ପାନୀକୁ ହସ୍ତାନ୍ତର କରିଛନ୍ତି। ଓଡ଼ିଶା ସରକାର ନିଜେ ଅଣ ଆଦିବାସୀ ହୋଇଥିବା ହେତୁ ଏହି ହସ୍ତାନ୍ତର ବେନିୟମ ଅଟେ। କିନ୍ତୁ ୧୯୯୪ ମସିହାରୁ ଓଡ଼ିଶା ମାଇନିଂ କମ୍ପାନୀ (ଓଡ଼ିଶା ସରକାରଙ୍କ ଏକ ସଂସ୍ଥା) ପ୍ରଥମେ ଉତ୍କଳ ଆଲୁମିନା କମ୍ପାନୀକୁ ଖଣିଲିଜ୍‌ର ଅନୁମତି ଦେଇଥିଲେ। ଏଥିରେ ସର୍ତ୍ତ ଥିଲା ଯେ ଆସନ୍ତା ଦୁଇବର୍ଷ ମଧ୍ୟରେ ଉକ୍ତ କମ୍ପାନୀ କାମ ଆରମ୍ଭ କରିବ। ମାତ୍ର କାମ ଆରମ୍ଭ କରିନପାରିବା ହେତୁ ୧୯୯୬ମସିହାରୁ ଉତ୍କଳ

ଆଲୁମିନା କମ୍ପାନୀର ଖଣିଲିଜ୍‌ର ସମୟ ସରିଯାଇଛି। ଟ୍ରିବ୍ୟୁନାଲ ତଥ୍ୟ ନେଇ ଜାଣିଲା ଯେ ୨୦୦୫ ମସିହା ପର୍ଯ୍ୟନ୍ତ ଓଡ଼ିଶା ସରକାର ଏହାକୁ ନବୀକରଣ କରିନାହାନ୍ତି।

ସୁପ୍ରିମକୋର୍ଟର ସି.ଇ.ସି. ରିପୋର୍ଟ ଅନୁସାରେ ଲାଞ୍ଜିଗଡ଼ଠାରେ ବେଦାନ୍ତ କମ୍ପାନୀକୁ ବକ୍ସାଇଟ୍ ଖଣି ପାଇଁ ନିୟମଗିରି ପାହାଡ଼ ଦିଆଯିବା ବେନିୟମ ଅଟେ। ଏହାର ପରିବେଶ ଅନୁମତି ନଥାଇ ଖଣି ଅନୁମତି ଦେବାକୁ ମଧ୍ୟ ପ୍ରଶ୍ନ କରାଯାଇଛି।

## ଗ୍ରାମସଭାର ଅନୁମତି

ଭୁରିଆ କମିଟିର ପ୍ରସ୍ତାବ କ୍ରମେ ୭୩ ତମ ସମ୍ବିଧାନ ସଂଶୋଧନ ପରେ ଗଠିତ 'ପେସା' (ପ୍ରୋଭିଜନ୍ ଫର୍ ସେଡ୍ୟୁଲ ଏରିଆ ଆକ୍ଟ) ନିୟମ ୧୯୯୬ ଅନୁସାରେ ଆଦିବାସୀ ବହୁଳ ଅଞ୍ଚଳରେ ବୃହତ୍ ପ୍ରକଳ୍ପ ଆସିବା ଆଗରୁ ଗ୍ରାମ ପଞ୍ଚାୟତ ଓ ଗ୍ରାମସଭାର ଅନୁମତି ଆବଶ୍ୟକ। ପୁଣି ଏସ୍.ପି. ଗୁପ୍ତା ବନାମ ଭାରତ ସରକାର କେଶ୍‌ରେ ସୁପ୍ରିମକୋର୍ଟର ରାୟ ହେଲା ଯେ ଏହାର ଅନୁମତି ନେବାଆଗରୁ ବ୍ୟକ୍ତି ବା ସମାଜକୁ ସମସ୍ତ ତଥ୍ୟ ଯୋଗାଇଦେବା ଆବଶ୍ୟକ। ଏ ସମ୍ପର୍କରେ ଉତ୍କଳ ଆଲୁମିନା ତରଫରୁ କୁହାଯାଇଛି ଯେ ୧୯୯୪ ମସିହାରୁ ବିଭିନ୍ନ ସଭା, ସମିତି ଓ କମ୍ୟୁନିକେଟର୍‌ମାନଙ୍କ ମାଧ୍ୟମରେ ପ୍ରକଳ୍ପ ସମ୍ପର୍କରେ ତଥ୍ୟ ଗ୍ରାମବାସୀଙ୍କୁ ଜଣାଇ ଦିଆଯାଇଛି। ଏହାପରେ ଅଞ୍ଚଳର ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ଜାନୁଆରୀ ୨୭, ୨୦୦୪ ଓ ମେ ୨୬, ୨୦୦୪ରେ ଏକ ସଭା ହୋଇଥିଲା। ଏପରିକି ନଭେମ୍ବର ୨୮, ୨୦୦୪ରେ ଟିକିରିଠାରେ ସର୍ବଦଳୀୟ ସଭାରେ ପ୍ରାୟ ୨୦,୦୦୦ ଲୋକ ପ୍ରକଳ୍ପକୁ ସମର୍ଥନ କରି ର୍‍ୟାଲି କରିଥିଲେ।

ଏହି ଟ୍ରିବ୍ୟୁନାଲ ଲୋକଙ୍କ ଠାରୁ ଜାଣିବାକୁ ପାଇଥିଲା ଯେ, କମ୍ପାନୀ ତରଫରୁ କେତେକ ମିଛ କଥା କୁହାଯାଇଛି। ମାଇକଞ୍ଚ ଗୁଳିକାଣ୍ଡର ଠିକ୍ ପରେ ପରେ ଡିସେମ୍ବର ୩୦, ୨୦୦୦ରେ ବିଭିନ୍ନ ଗ୍ରାମପଞ୍ଚାୟତରେ (ମାଇକଞ୍ଚ, କୁଚେଇପଦର, ଯୋଡ଼ିପାରି, ଟିକିରି ଓ ଗୋରଖପୁର) ଗ୍ରାମସଭାରେ ସେ ସମୟର ରାୟଗଡ଼ା ଜିଲ୍ଲାପାଳ ଦୁର୍ଗାପ୍ରସାଦ ଦାସଙ୍କ ତରଫରୁ କରାଯାଇଥିଲା। ଏହି ଗ୍ରାମସଭାରେ ଲୋକେ କମ୍ପାନୀକୁ ବିରୋଧ କରି ମତ ଦେଇଥିଲେ।

ଏହା ପରେ ପ୍ରମୋଦ ମେହେର୍ଦ୍ଦା, ରାୟଗଡ଼ାର ଜିଲ୍ଲାପାଳ ଗଲା ଅକ୍ଟୋବର ୯, ୨୦୦୪ରେ ବିସ୍ଥାପିତ ହେବାକୁ ଥିବା ରାମିବେଡ଼ା, କେନ୍ଦୁଖୁଣ୍ଟି ଓ ତଳକରଳ ଗାଁର ଜନମତ ନେବା ପାଇଁ ସଭା କରିଥିଲେ। ମାତ୍ର ଉକ୍ତ ସଭାରେ ୩୦୦ ସଶସ୍ତ୍ର ପୋଲିସ ଉପସ୍ଥିତ ରହି ଗ୍ରାମବାସୀଙ୍କୁ ଚାରିପଟରୁ ବନ୍ଦ ରଖି ମତ ନେଇଥିଲେ। ଏପରି ମତ ନେବା ବନ୍ଧୁକ ମୁନରେ ମତ ନେବା ସହିତ ସମାନ।

କମ୍ପାନୀ ତରଫରୁ ନିଯୁକ୍ତ କମ୍ୟୁନିକେଟର/ମୋଟିଭେଟରମାନେ ଥଇଥାନ ସମ୍ପର୍କରେ

ବହୁତ ମିଛ ପ୍ରତିଶ୍ରୁତିମାନ ପରିବାରମାନଙ୍କୁ ଦେଇଛନ୍ତି ଏହି ଟିମ୍ ଜାଣିପାରିଥିଲା ।

ସେହିପରି ଲାଞ୍ଜିଗଡ଼ ଅଞ୍ଚଳରେ ନିୟମଗିରି ସୁରକ୍ଷା ସମିତିର ମତ ଅନୁସାରେ କଳାହାଣ୍ଡି ଜିଲ୍ଲାର ଜିଲ୍ଲାପାଳ ଶାଶ୍ୱତ ମିଶ୍ର ୧୨ଟି ଗ୍ରାମର ଲୋକଙ୍କୁ ନେଇ ଗ୍ରାମସଭା କରିଥିଲେ । ପ୍ରଥମେ ସ୍ଥାନୀୟ ଲୋକେ ଏହାକୁ ବିରୋଧ କରିଥିଲେ । ପରେ ବାହାର ଲୋକଙ୍କୁ ଆଣି ଏହି ମିଟିଂ କରାଗଲା । ଏହା ଫଳରେ କିନାରୀ, ବୋରଭଟ୍ଟା ଓ ସିନ୍ଧିବାହାଲ ଗ୍ରାମର ଲୋକଙ୍କ ଜମିକୁ ଜବରଦସ୍ତି କମ୍ପାନୀକୁ ହସ୍ତାନ୍ତର କରି ପରେ ଘରକୁ ବୁଲଡ଼ୋଜରରେ ଭାଙ୍ଗି ଦିଆଗଲା । ଏବେ ନିୟମଗିରିର ଡଙ୍ଗରିଆ କନ୍ଧମାନେ ସେମାନଙ୍କ ଭବିଷ୍ୟତ ନେଇ ଅନିଶ୍ଚିତତା ମଧ୍ୟରେ ଅଛନ୍ତି । ଶାଶ୍ୱତ ମିଶ୍ର ସବୁ ଗ୍ରାମକୁ ଯାଇ କହିଛନ୍ତି *'ମାଟିରୁ ଉପରକୁ ଛଅଇଞ୍ଚ ମାତ୍ର ଲୋକଙ୍କର / ତା ତଳକୁ ସରକାରଙ୍କର'* । ଏହା ବ୍ରିଟିଶ ଅମଳର ମତ ଯାହାକୁ ପରିବର୍ତ୍ତନ କରାଯାଇଥିଲେ ମଧ୍ୟ ଶ୍ରୀ ମିଶ୍ର ସେକଥା ଜାଣିନାହାନ୍ତି ଏବଂ ତାଙ୍କରି ଉପସ୍ଥିତିରେ ଜାନୁଆରୀ ୨, ୨୦୦୬ରେ ସେ ଯାଜପୁରର ଜିଲ୍ଲାପାଳ ଥିଲାବେଳେ କଳିଙ୍ଗନଗରଠାରେ ଟାଟା କମ୍ପାନୀକୁ ସୁରକ୍ଷା ଦେବାକୁ ଯାଇ ଗୁଳିକାଣ୍ଡ ହେଲା ଓ ୧୩ଜଣ ଆଦିବାସୀଙ୍କର ମୃତ୍ୟୁ ହୋଇଗଲା ।

## ଆଦିବାସୀ ଅଧିକାର କ୍ଷୁଣ୍ଣ

ଉତ୍କଳ ଆଲୁମିନା କମ୍ପାନୀ କାଶୀପୁରକୁ ଆସିବା ଦିନଠାରୁ ଆଦିବାସୀଙ୍କ ଉପରେ ବିପଦ ଉପରେ ବିପଦ ମାଡ଼ିଆସିଛି । ଆଉ ଏକ ବିପଦ ମଧ୍ୟ ଦେଇ ଏବେବି କାଶୀପୁରର ଝୋଡ଼ିଆ ଆଦିବାସୀ ମାନେ ଯାଉଛନ୍ତି । ୧୯୯୨ମସିହାରୁ କାଶୀପୁର ଝୋଡ଼ିଆ ଆଦିବାସୀ ସମ୍ପ୍ରଦାୟକୁ ଅନୁସୂଚୀତ ଜନଜାତି (ଏସ୍.ଟି.) ସାର୍ଟିଫିକେଟ ଦେବା ବନ୍ଦ କରିଦିଆଯାଇଛି । ସେମାନଙ୍କୁ ଅନ୍ୟାନ୍ୟ ପଛୁଆବର୍ଗ ( ଓ.ବି.ସି) ତାଲିକାରେ ନିଆଯାଉଛି । ଏହା ଦ୍ୱାରା ଝୋଡ଼ିଆ ଆଦିବାସୀ ପିଲାମାନେ ଆବାସିକ ସ୍କୁଲରେ ପାଠପଢ଼ିବା ସୁବିଧାରୁ ବଞ୍ଚିତ ହେଉଛନ୍ତି । ପ୍ରଶାସନର ଏହି ମନମୁଖୀ କାମ କେବଳ କାଶୀପୁର ଅଞ୍ଚଳରେ ଦେଖାଯାଉଛି । ଏହାଦ୍ୱାରା ଝୋଡ଼ିଆ ଆଦିବାସୀଙ୍କ ଜମି ସହଜରେ ଅଣଆଦିବାସୀଙ୍କ ହାତକୁ ଚାଲିଯିବ । ଉତ୍କଳ ଆଲୁମିନା କମ୍ପାନୀ ଅସୁଥିବା ହେତୁ ବହୁ ଅଣ – ଆଦିବାସୀ କାଶୀପୁର ଅଞ୍ଚଳ ପାଇଁ ଆଗ୍ରହ ଦେଖାଇପାରନ୍ତି । ସେଥିପାଇଁ ଜାଣି ଜାଣି ଏ ପ୍ରକାର କାମ ଓଡ଼ିଶା ସରକାରଙ୍କ ତରଫରୁ କରାଯାଉଛି ।

## ଟ୍ରିବ୍ୟୁନାଲ ସମ୍ମୁଖରେ ଏ ସମ୍ପର୍କରେ ସ୍ଥାନୀୟ ଆଦିବାସୀ ଦେଇଥିବା ନିଜର ମତ:

'ଏହାଦ୍ୱାରା ପ୍ରାୟ ୪୦,୦୦୦ ଆଦିବାସୀ ସରକାରଙ୍କ ଷଡ଼ଯନ୍ତ୍ର ପାଇଁ ଆଦିବାସୀ ତାଲିକାରୁ ନାମ ହରାଇଲେଣି । ଏପରି ହେଲେ ଆଦିବାସୀ ଜମି ସହଜରେ ହସ୍ତାନ୍ତର ହୋଇପାରିବ । କମ୍ପାନୀ ମଧ୍ୟ ସହଜରେ ଜମି ଅକ୍ତିଆର କରିନେବ । ଏହି ସବୁକୁ ଆଖିଆଗରେ ରଖି କେନ୍ଦ୍ର ଓ ରାଜ୍ୟ ସରକାର ଝୋଡ଼ିଆ ଆଦିବାସୀମାନଙ୍କୁ ଆଦିବାସୀ ତାଲିକାରୁ ବାଦ ଦେଇଛନ୍ତି ।'

– ଶଙ୍କର ପ୍ରସାଦ ମୁଦୁଲି

'ସେମାନେ ଆମକୁ ଓବିସି ବୋଲି ଘୋଷଣା କରୁଛନ୍ତି । ତାହାଦ୍ୱାରା ସେମାନେ ଆମ ଜମି ନେଇଯିବେ, ଆମର ଜମି ଚାଲିଗଲେ ଆମେ ବଞ୍ଚିବୁ କେମିତି ? ଆମେ ଏ ମାଟିର ଲୋକ । ପ୍ରଥମେ ୧୯୯୨ରେ ଆମକୁ ଓ.ବି.ସି କଲେ । ପରେ ୧୯୯୩ରେ ବନ୍ଦ କଲେ । ପୁଣି ଆରମ୍ଭ କଲେ ଯେ ଏବେ ବି ଆମେ ଏସ୍.ଟି. ସାର୍ଟିଫିକେଟ ପାଉନାହୁଁ ।'

– ମନୋହର ଝୋଡ଼ିଆ

## ସରକାରଙ୍କ ଅନୁମତି ପ୍ରକ୍ରିୟା ଓ ଉତ୍କଳ ଆଲୁମିନା କମ୍ପାନୀ ପାଇଁ ବେନିୟମ କାମ

କୌଣସିଠାରେ ଯଦି ବୃହତ୍ତର ପ୍ରକଳ୍ପ ହୋଇଥାଏ ତେବେ ରାଜ୍ୟ ସରକାର ଓ କେନ୍ଦ୍ର ସରକାରଙ୍କ ଠାରୁ ବିଭିନ୍ନ ଅନୁମତି ଆଣିବାକୁ ହୁଏ । ସେଥିମଧ୍ୟରୁ ସ୍ଥାନର ଅନୁମତି, ପରିବେଶ ଅନୁମତି, ଖଣି ଅନୁମତି, ଜଙ୍ଗଲ ଅନୁମତି ଓ ରାଜ୍ୟ ପ୍ରଦୂଷଣ ବୋର୍ଡ଼ର ଅନୁମତି ଅନ୍ୟତମ । ଏହା ବିଭିନ୍ନ ସୋପାନ ଦେଇ କରିବାକୁ ହୋଇଥାଏ ।

ସ୍ଥାନର ଅନୁମତି ବା ସାଇଟ୍ କ୍ଲିଅରାନ୍‌ସ ପାଇବା ପାଇଁ ଉତ୍କଳ ଆଲୁମିନା ତରଫରୁ ଜୁନ୍ ୧୬, ୧୯୯୪ରେ ଆବେଦନ କରାଯାଇଥିଲା । ମାତ୍ର କେନ୍ଦ୍ର ସରକାରଙ୍କ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ତରଫରୁ ମାତ୍ର ୧୮ ଦିନ ପରେ ଏହି ଅନୁମତି ଦିଆଗଲା । ଏହି ଅନୁମତି ମିଳିବା ପାଇଁ ଅତିକମ୍‌ରେ ଏକବର୍ଷ ସମୟ ନେଇ ସେହି ସ୍ଥାନ ସମ୍ପର୍କରେ ସମସ୍ତ ଅନୁଧ୍ୟାନ କରାଯାଇଥାଏ । ଆଦିବାସୀ ବହୁଳ ଅଞ୍ଚଳରେ ଏହାର ପ୍ରଭାବ, ଏପରିକି ପ୍ରକଳ୍ପର ସାମାଜିକ ଓ ଆର୍ଥିକ ପ୍ରଭାବ ସମ୍ପର୍କରେ କୌଣସି ଗବେଷଣା କରାନଯାଇ ଏହି ଅନୁମତି କମ୍ପାନୀ ତରଫରୁ ନିଆଯାଇଛି । ଏହାପରେ ପରିବେଶ ଅନୁମତି ପାଇଁ ଏକ ପ୍ରକଳ୍ପକୁ (ଏହାର ଉଭୟ ଖଣି, ଆଲୁମିନା ପ୍ଲାଣ୍ଟ୍ ଓ ପାୱାର ପ୍ଲାଣ୍ଟ୍‌କୁ) ଏକକ ଭାବରେ ନିଆଯାଇ ପରେ ଅନୁମତି ନେବା କଥା । ମାତ୍ର କମ୍ପାନୀ ତରଫରୁ ଖଣି ପାଇଁ ଅଲଗା ଓ ଆଲୁମିନା ପାୱାର ପ୍ଲାଣ୍ଟ୍ ପାଇଁ ଅଲଗା ଅନୁମତି ପାଇଁ ଆବେଦନ କରାଯାଇଛି । ଏହାଦ୍ୱାରା ଯେଉଁ ପ୍ରକଳ୍ପ ପରିବେଶକୁ (ଯେମିତିକି କାଶୀପୁର ଅଞ୍ଚଳର ପାଣି, ମାଟି ଓ ବାୟୁ) ଯେତିକି କ୍ଷତି କରିବାର ସୀମା ମଧ୍ୟରେ ରହିଲେ ଅନୁମତି ମିଳିବା କଥା, ଉତ୍କଳ ଆଲୁମିନା କମ୍ପାନୀ ତାହାଠାରୁ ବହୁତ ଅଧିକ କ୍ଷତି ଏ ଅଞ୍ଚଳର ପରିବେଶକୁ କରୁଥିବା ହେତୁ ଅଲଗା ଅଲଗା ଭାବରେ ଅନୁମତି ପାଇଁ କମ୍ପାନୀ ତରଫରୁ ଆବେଦନ କରାଯାଇଛି ।

ପୁଣି କୌଣସି କମ୍ପାନୀକୁ ପରିବେଶ ଅନୁମତି ମିଳିବା ଆଗରୁ ସେହି କମ୍ପାନୀ ତରଫରୁ ପରିବେଶର କ୍ଷତିର ଆକଳନ ଓ ଏହାର ଭରଣା ପାଇଁ ଦୁଇଟି ପୃଥକ୍ ରିପୋର୍ଟ (EIA & EMP) ଏକବର୍ଷର ଅନୁଧ୍ୟାନ ପରେ ଦିଆଯାଇଥାଏ । ମାତ୍ର ଏଥିରେ ବ୍ୟତିକ୍ରମ ଘଟାଇ ଉତ୍କଳ ଆଲୁମିନା କମ୍ପାନୀ ତରଫରୁ ଉଭୟ ପରିବେଶ ପ୍ରଭାବଜନିତ ଆକଳନ ବା Environment Impact Assesment (EIA) ରିପୋର୍ଟ ଓ ପରିବେଶ ପରିଚାଳନା ଯୋଜନା ବା Environment Management Plan (EMP) ରିପୋର୍ଟକୁ ତ୍ୱରିତ ଗତିରେ ମାତ୍ର ଚାରିମାସ ମଧ୍ୟରେ ଅନୁଧ୍ୟାନ କରି ଦିଆଯାଇଛି ।

ଏ ସମ୍ପର୍କରେ ଓଡ଼ିଶା ରାଜ୍ୟ ପ୍ରଦୂଷଣ ବୋର୍ଡ଼ର କହିବା ହେଲା ନାଲ୍‌କୋର ଅନୁଗୁଳ ପ୍ଲାଣ୍ଟ୍ ବସିବା ଆଗରୁ ଏହିପରି ତ୍ୱରିତ ରିପୋର୍ଟ ଦେଇଥିବା ହେତୁ ଭୂମିତଳ ପାଣିରେ ଅଧିକ ଫ୍ଲୋରାଇଡ୍ ଥିବା ଅଞ୍ଚଳରେ ନାଲ୍‌କୋର ପ୍ଲାଣ୍ଟ୍ ବସିଛି । ଏହି ପ୍ଲାଣ୍ଟ୍ ବସିଲା ପରେ ଭୂମିତଳ ଜଳର ଫ୍ଲୋରାଇଡ୍ ଆହୁରି ଅଧିକ ବଢ଼ିଯାଇ ଏହାର ନିକଟସ୍ଥ ୧୧ଟି ଗ୍ରାମର ଗ୍ରାମବାସୀଙ୍କର ସ୍ୱାସ୍ଥ୍ୟରେ ସଙ୍କଟ ଦେଖାଦେଇଛି ।

ଇଞ୍ଜିନିୟର୍ସ ଇଣ୍ଡିଆ ଲିମିଟେଡ୍ ନାମକ ଏକ ବେସରକାରୀ ସଂସ୍ଥାକୁ ପରିବେଶ ଉପରେ ପ୍ରଭାବ ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ ଉତ୍କଳ ଆଲୁମିନା କମ୍ପାନୀ ତରଫରୁ ଦାୟିତ୍ୱ ଦିଆଯାଇଥିଲା । (ଏହା ମଧ୍ୟ ଆଶ୍ଚର୍ଯ୍ୟର କଥା ଯେ ପ୍ରକଳ୍ପର କ'ଣ ପ୍ରଭାବ ହେବ ତାହା କମ୍ପାନୀ ତରଫରୁ ଏକ ସଂସ୍ଥାକୁ ନିଯୁକ୍ତ କରାଯିବ । ସରକାରଙ୍କ ତରଫରୁ ଏହାର ପ୍ରଭାବ ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ କୌଣସି ବ୍ୟବସ୍ଥା ନାହିଁ) । ହେଲେ ଇଞ୍ଜିନିୟର୍ସ ଇଣ୍ଡିଆ ନିଜର ରିପୋର୍ଟ ଦେବା ଆଗରୁ ଉତ୍କଳ ଆଲୁମିନା କମ୍ପାନୀକୁ କେନ୍ଦ୍ର ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ତରଫରୁ ଅନୁମତି ମିଳି ସାରିଥିଲା । ଅର୍ଥାତ୍ କେନ୍ଦ୍ର ସରକାରଙ୍କଠାରୁ ଖଣି ପାଇଁ ପରିବେଶ ଅନୁମତି ଉତ୍କଳ ଆଲୁମିନା କମ୍ପାନୀକୁ ୨୫ ସେପ୍ଟେମ୍ବର ୧୯୯୫ ଓ ଆଲୁମିନା ପ୍ଲାଣ୍ଟ୍ / ପାୱାର ପ୍ଲାଣ୍ଟ୍ ପାଇଁ ୨୭ ସେପ୍ଟେମ୍ବର ୧୯୯୫ରେ ପରିବେଶ ଅନୁମତି ମିଳିଥିଲା । ଅଥଚ ଇଞ୍ଜିନିୟର୍ସ ଇଣ୍ଡିଆ ଜାନୁଆରୀ ୧୯୯୬ରେ ଖଣି ସମ୍ବନ୍ଧୀୟ ଓ ଫେବୃୟାରୀ ୧୯୯୬ରେ ପ୍ଲାଣ୍ଟ୍ ସମ୍ବନ୍ଧୀୟ ନିଜର ରିପୋର୍ଟ କେନ୍ଦ୍ର ପରିବେଶ ମନ୍ତ୍ରଣାଳୟକୁ ପ୍ରଦାନ କରିଥିଲା ।

## ଜଙ୍ଗଲ ଅନୁମତି

ଯଦି କୌଣସି ପ୍ରକଳ୍ପ ଦ୍ୱାରା ଜଙ୍ଗଲ ଜମି ବ୍ୟବହୃତ ହୋଇଥାଏ ତେବେ ପରିବେଶ ମନ୍ତ୍ରଣାଳୟରୁ ଜଙ୍ଗଲ ଅନୁମତି ପତ୍ର ନେବା ଜରୁରୀ । ଉତ୍କଳ ଆଲୁମିନାକୁ କିନ୍ତୁ ଖଣି ସମ୍ବନ୍ଧୀୟ ଜଙ୍ଗଲ ଅନୁମତି ପତ୍ର ଏବେ ସୁଦ୍ଧା ମିଳିନାହିଁ (ବାଫଲିମାଳୀ ଚାରିପଟେ ସଂରକ୍ଷିତ ଜଙ୍ଗଲ ରହିଛି) । ମାତ୍ର ପ୍ଲାଣ୍ଟ୍ ପାଇଁ ଜଙ୍ଗଲ ଅନୁମତି ପତ୍ର ୧୯ ଏପ୍ରିଲ ୧୯୯୪ରେ ମିଳିଛି । ଏପରି ଅନୁମତି ମିଳିବା ବେନିୟମ ଅଟେ । କାରଣ ଉତ୍କଳ ଆଲୁମିନାର ପ୍ଲାଣ୍ଟ୍ ପାଇଁ ୨୦୯ ଏକର ଜଙ୍ଗଲ ଜମି ବ୍ୟବହୃତ ହେବ ଓ ଜଙ୍ଗଲ ଜମିକୁ କୌଣସି ପ୍ରକାରରେ ବ୍ୟବସାୟିକ ଉଦ୍ଦେଶ୍ୟରେ ବ୍ୟବହାର ପାଇଁ ଜଙ୍ଗଲ ନିୟମରେ ବାରଣ କରାଯାଇଛି ।

## ପ୍ରଦୂଷଣ ବୋର୍ଡ଼ ଅନୁମତି

ଟ୍ରିବ୍ୟୁନାଲକୁ ରାଜ୍ୟ ପ୍ରଦୂଷଣ ବୋର୍ଡ଼ ତରଫରୁ ମିଳିଥିବା ଅନୁମତି ୧୯୯୫ରେ ମିଳିଛି । ତେବେ ସରକାରଙ୍କ ମତ ଅନୁସାରେ ସେ ସମୟର ନିୟମ ଅନୁସାରେ ଜନଶୁଣାଣି ଜରୁରୀ ନ ଥିଲା । ମାତ୍ର ଉତ୍କଳ ଆଲୁମିନା କମ୍ପାନୀ ପ୍ରତି ଛଅମାସରେ ନିଜର ରିପୋର୍ଟ ବୋର୍ଡ଼କୁ ଦେବାକଥା ମାତ୍ର ୧୯୯୯ ପର୍ଯ୍ୟନ୍ତ ଏପରି କୌଣସି ରିପୋର୍ଟ ଏ କମ୍ପାନୀ ଦେଇନାହିଁ ତଥାପି ବୋର୍ଡ଼ର କାର୍ଯ୍ୟଶୈଳୀକୁ ଦେଖିଲେ ଏପରି ହେଲା କରିବା କୌଣସି ଦୃଷ୍ଟିରୁ ଦୋଷାବହ ନୁହେଁ ।

'ପାହାଡ଼ ଥିବା ହେତୁ ଜଙ୍ଗଲ ଅଛି। ନଦୀରେ ପାଣି ଆସୁଛି। ଯଦି ନଦୀରେ ପାଣି ନ ଆସିବ ତେବେ କ'ଣ ଜଙ୍ଗଲ ବଞ୍ଚିବ? ତେବେ କ'ଣ ମଣିଷ ବଞ୍ଚିବ?

-ବୁଲକା ମିଣିଆକା

ଉତ୍କଳ ଆଲୁମିନା କମ୍ପାନୀର ବକ୍ସାଇଟ ଖଣି, ଆଲୁମିନା ପ୍ଲାଣ୍ଟ ଓ ପାଓ୍ୱାର ପ୍ଲାଣ୍ଟର ପରିବେଶ ଓ ସ୍ୱାସ୍ଥ୍ୟ ଉପରେ କ'ଣ ପ୍ରଭାବ ପଡ଼ିବ ସେ ସମ୍ପର୍କରେ କୌଣସି ନିରପେକ୍ଷ ତଦନ୍ତ ଆଜି ପର୍ଯ୍ୟନ୍ତ ହୋଇନାହିଁ। ତେଣୁ ଏହାର ପ୍ରଭାବ ସମ୍ପର୍କରେ ଆକଳନ କରିବା କଷ୍ଟ। ଏହା ପୂର୍ବରୁ କମ୍ପାନୀ ତରଫରୁ ଜୀବଜନ୍ତୁଙ୍କ ଉପରେ ପ୍ରଭାବ ସମ୍ପର୍କରେ ସଲିମ ଅଲ୍ଲୀ ସେଣ୍ଟର ଫର ଅରିନ୍ଥୋଲୋଜୀ ଆଣ୍ଡ୍ ନେଚୁରାଲ ହିଷ୍ଟ୍ରି (ସ୍ୟାକନ) ଦ୍ୱାରା ଓ ସାମାଜିକ - ଆର୍ଥିକ ପରିସ୍ଥିତି ସମ୍ପର୍କରେ ଇନ୍ଦିରାଗାନ୍ଧୀ ବିକାଶ ସଂସ୍ଥା ଦ୍ୱାରା ଅନୁଧ୍ୟାନ କରାଯାଇଛି। ତେବେ ସ୍ୟାକନର ରିପୋର୍ଟର ଅଳ୍ପ କେତେକ ଅଂଶ ମିଳୁଥିଲେ ମଧ୍ୟ ଇନ୍ଦିରାଗାନ୍ଧୀ ବିକାଶ ସଂସ୍ଥା ଦ୍ୱାରା କରାଯାଇଥିବା ଗବେଷଣାତ୍ମକ ରିପୋର୍ଟ କାହାରି ନିକଟରେ ଉପଲବ୍ଧ ନୁହେଁ। ଅନ୍ୟପଟରେ ସୁପ୍ରିମକୋର୍ଟ ଦ୍ୱାରା ଗଠିତ କେନ୍ଦ୍ରୀୟ ଅନୁଧ୍ୟାନ କମିଟି ଲାଞ୍ଜିଗଡ଼ର ବେଦାନ୍ତ କମ୍ପାନୀ ସମ୍ପର୍କରେ ଦେଇଥିବା ରିପୋର୍ଟରେ ଉଲ୍ଲେଖ କରିଛନ୍ତି ଯେ - 'ଆଲୁମିନା ପ୍ଲାଣ୍ଟ ଏହି ସମ୍ପୃକ୍ତ ବକ୍ସାଇଟ୍ ଖଣି ପରିବେଶ, ଜୀବଜନ୍ତୁ ଓ ବୃକ୍ଷଲତା ଉପରେ ବିଶେଷକରି ଖଣି ଓ ଖଣିର ମାଟିପଡ଼ିବା ହେତୁ ଅସମ୍ଭବ କ୍ଷତି କରିବ। ଖଣି ଅଞ୍ଚଳକୁ ରାସ୍ତା ନିର୍ମାଣ, ବିଷାକ୍ତ ଗ୍ୟାସ ନିର୍ଗତ, ବ୍ଲାଷ୍ଟିଙ୍ଗ୍, ଡ୍ରିଲିଙ୍ଗ୍, ଲୋଡ଼ିଙ୍ଗ୍ ଓ ଅନଲୋଡ଼ିଙ୍ଗ୍ ହେତୁ ପରିବେଶକୁ ଅତ୍ୟଧିକ କ୍ଷତିକରିବ।'

## ପରିବେଶ ଉପରେ ପ୍ରଭାବ

'ତରୁ'ର ରିପୋର୍ଟ ଅନୁସାରେ ବାଫଲିମାଳୀ ଚାରିପଟେ ବହୁ ଝରଣା ବହୁଛି ଓ ବକ୍ସାଇଟ ସରିଗଲେ ପାଣି ଶୁଖିଯିବ। ପ୍ରଥମ ପାଞ୍ଚବର୍ଷ ମଧ୍ୟରେ ପ୍ରାୟ ୪୦ରୁ ୫୦ଲକ୍ଷ ଟନ ମାଟି ବାଫଲିମାଳୀ ଚାରିପଟେ ଜମିରେ ପକାଯିବ। ଏହା ଚାଷଜମିକୁ କ୍ଷତି କରିବ। ଏହା ସହିତ ଇନ୍ଦ୍ରାବତୀର ପୂର୍ବତନ ଇଞ୍ଜିନିୟର ଦାଶରଥି ଦାଶଙ୍କ ରିପୋର୍ଟ ଅନୁସାରେ ଏହି ମାଟି କ୍ରମଶଃ ଇନ୍ଦ୍ରାବତୀରେ ଆସି ଇନ୍ଦ୍ରାବତୀର ବନ୍ଧକୁ ମଧ୍ୟ ପୋତି ଦେବ।

ଏହା ବ୍ୟତୀତ କମ୍ପାନୀ ଦୈନିକ ୧୦୦୦ରୁ ୧୫୦୦ କ୍ୟୁବିକ ମିଟର (କେତେ ଲିଟର?) ପାଣି ଖଣିରେ ସିଞ୍ଚନ ପାଇଁ ଓ ପ୍ଲାଣ୍ଟ ଅଞ୍ଚଳରେ କର୍ମଚାରୀଙ୍କ ପାନୀୟ ପାଇଁ ଆବଶ୍ୟକ କରିବ। ଏହାଦ୍ୱାରା ଏ ଅଞ୍ଚଳରେ ପାଣିର ଘୋର ଅସୁବିଧା ଦେଖାଦେବ। ବୁଲକା ମିଣିଆକାଙ୍କ ଭାଷାରେ 'ଲକ୍ଷ୍ମୀପୁର ଅଞ୍ଚଳରେ ଅବସ୍ଥିତ କୋଡ଼ିଙ୍ଗାମାଳୀରୁ ବକ୍ସାଇଟ ନେବା ପାଇଁ ହିଣ୍ଡାଲ୍‌କୋ କମ୍ପାନୀ ତରଫରୁ ଉଦ୍ୟମ କରାଗଲେ ଏହି ମାଳୀରୁ ବାହାରିଥିବା

ବସୁନ୍ଧରା ନଦୀ ଶୁଖିଯିବ। ଏହାଦ୍ୱାରା ଲକ୍ଷ୍ମୀପୁର ଓ କାଶୀପୁର ଅଞ୍ଚଳ ମରୁଭୂମି ପାଲଟିଯିବ।

'ସ୍ୟାକନ୍'ର ରିପୋର୍ଟ ଅନୁସାରେ ବାଫଲିମାଳୀ ଚାରିପଟେ ୧୯୫ ପ୍ରକାରର ବୃକ୍ଷ, ୬୬ପ୍ରକାରର ପକ୍ଷୀ, ୧୩ ପ୍ରକାରର ସରୀସୃପ, ୯ ପ୍ରକାରର ଉଭୟଚର ଓ ୧୪ ପ୍ରକାରର ପ୍ରଜାପତି ଅଛନ୍ତି। ପରିବେଶ ଦୃଷ୍ଟିରୁ ବାଫଲିମାଳୀ ଏକ ସମ୍ବେଦନଶୀଳ ଅଞ୍ଚଳ। ସୁପ୍ରିମକୋର୍ଟ ରାଜସ୍ଥାନର ଆରାବଳୀ ପାହାଡ଼ ଚାରିପଟେ ସମସ୍ତ ଖଣିକୁ ଡିସେମ୍ବର ୨୦୦୨ ପରେ ବନ୍ଦ କରିଦେବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି। କାରଣ ଏହା ଏକ ପରିବେଶ ଦୃଷ୍ଟିରୁ ସମ୍ବେଦନଶୀଳ ଅଞ୍ଚଳ ଥିଲା।

ତରୁର ରିପୋର୍ଟ ଅନୁସାରେ ନାଲ୍‌କୋର ପଞ୍ଚପଟମାଳୀକୁ ଲାଗିକରିଥିବା ଝୋଲାମୁହା ଗ୍ରାମକୁ ଖଣିର ମାଟି ପଡ଼ି ଚାଷ ଜମି କ୍ଷତି କରିବା ହେତୁ ସେମାନଙ୍କୁ ଗାଁ ଛାଡ଼ି ଚାଲିଯିବା ପାଇଁ ୧୯୯୫ରେ ଅର୍ଥାତ୍ ଖଣି ଖୋଲାଯିବା ୧୪ବର୍ଷ ପରେ ନୋଟିସ ଆସିଛି।

ଉତ୍କଳ ଆଲୁମିନା କମ୍ପାନୀ ଯଦି ହୁଏ ତେବେ ଏହା ଦୈନିକ ୧୨,୦୦୦ କ୍ୟୁବିକ ମିଟର (ଲିଟର) ପାଣି ଏହାର ସମସ୍ତ କାର୍ଯ୍ୟ ପାଇଁ ଦରକାର କରିବ। ଏ ଅଞ୍ଚଳରେ ସାନନଳା ଓ ବଡ଼ନଳାକୁ ଛାଡ଼ି ଦେଲେ ଆଉ କୌଣସି ନଦୀ ବା ପ୍ରବାହିତ ଉତ୍ସ ନାହିଁ। କମ୍ପାନୀ ସାନନଳାରୁ ପାଣି ନେଇ ନିଜର ବ୍ୟବହାରରେ ଲଗାଇବ ଓ ବଡ଼ନଳାର ପାଣିରେ ମଇଳା ଛାଡ଼ିବ। ଏହା ପରିବେଶକୁ ଦୂଷିତ କରିବା ସହିତ ପାଣିର ଅତ୍ୟଧିକ ସଂକଟ ସୃଷ୍ଟି କରିବ।

ଏହା ବ୍ୟତୀତ ରିଫାଇନାରୀ ପ୍ଲାଣ୍ଟରୁ ନାଲିମାଟି ବାହାରିବ। ପ୍ରତ୍ୟେକ ଏକ ଟନ୍ ଆଲୁମିନା ତିଆରି ପାଇଁ ଦେଢ଼ ଟନ୍ ନାଲିମାଟି ବାହାରିବ। ଏଥିରେ ବହୁତ ରାସାୟନିକ ଜିନିଷ ଟକ୍ସିକ୍ ଆଲକାଲାଇନ୍ ଓ ତେଜସ୍କ୍ରିୟ ରେଡ଼ିଓ ଆକ୍ଟିଭ ମିଶ୍ରଣ ରହିବ। ପ୍ଲାଣ୍ଟ୍ ଠାରୁ ୨.୫ କି.ମି. ଦୂରରେ ନାଲିମାଟି ପୋଖରୀରେ କମ୍ପାନୀ ଏହି ବିଷାକ୍ତ ନାଲିମାଟିକୁ ରଖିବ। ଏହା ଭୂତଳ ଜଳ ଓ ବାୟୁକୁ ବିଷାକ୍ତ କରିବ (ନାଲିମାଟିରୁ ପ୍ରାୟ ୧୫୦୦ ଟନ୍ ସୋଡ଼ିୟମ୍ ହାଇଡ୍ରୋକ୍ସାଇଡ଼୍, ପ୍ରତିଦିନ ମାଟିରେ ମିଶିବ ବୋଲି ଏକ ତଥ୍ୟରୁ ଜଣାପଡ଼େ)। ଏହି ସମାନ ପ୍ରକାର ବିଷାକ୍ତ ଜିନିଷ ଗୁଜୁରାଟର ଭୁଜ୍ ଓ କର୍ଣ୍ଣାଟକର ମାଙ୍ଗୁର ଅଞ୍ଚଳରେ ଦେଖାଯାଉଛି।

ଏହା ବ୍ୟତୀତ ପାଉଁଶ ପୋଖରୀ ମଧ୍ୟ ପ୍ଲାଣ୍ଟ୍‌ର ୪.୫ କି.ମି. ଦୂରରେ ତିଆରି ହେବ। ଏହାଦ୍ୱାରା ଆହୁରି ଅଧିକ ୧୧ଟି ଗ୍ରାମ କ୍ଷତିଗ୍ରସ୍ତ ହେବ ବୋଲି ଜଣାପଡ଼େ। ପାଉଁଶ ପୋଖରୀରୁ ପାଉଁଶ ଉଡ଼ି ପାଖାପାଖି ଗାଁ ମାନଙ୍କର ଚାଷ ଜମିକୁ କ୍ଷତିକରିବ ଓ ବାୟୁକୁ ଦୂଷିତ କରିବ। ଇତିମଧ୍ୟରେ କମ୍ପାନୀ ତରଫରୁ ଉକ୍ତ ପାଉଁଶକୁ ଶୁଖିଲା ରଖିବା ପାଇଁ ନିଜର ରିପୋର୍ଟରେ ପ୍ରସ୍ତାବ ଦିଆଯାଇଛି। ଏହା ଅଧିକ ବିପଦପୂର୍ଣ୍ଣ ଅଟେ। ଇତିମଧ୍ୟରେ ଓଡ଼ିଶା ରାଜ୍ୟ ପ୍ରଦୂଷଣ ବୋର୍ଡ଼ର ପୂର୍ବତନ ଅଧ୍ୟକ୍ଷ ଆର.ସି. ଦାଶ ନିଜର ରିପୋର୍ଟରେ ଏକ ତଥ୍ୟ ଦେଇଛନ୍ତି ଯେ ପ୍ରତି ଦେଢ଼ଟନ୍ ନାଲିମାଟି ପାଇଁ ପ୍ରାୟ ୨୦୦ ହେକ୍ଟର ଜମି ଆବଶ୍ୟକ। ତେଣୁ ଉତ୍କଳ ଆଲୁମିନା କମ୍ପାନୀ ନିଜର ସମସ୍ତ ନାଲିମାଟିକୁ ରଖିବା ପାଇଁ (ପ୍ରାୟ ୧୦୦ ଟନ୍ ନାଲିମାଟି ପାଇଁ) ୨୦,୦୦୦ ହେକ୍ଟର ଜମି ଆବଶ୍ୟକ କରିବ। ଏଥିପାଇଁ ପ୍ଲାଣ୍ଟ୍‌ର ୨୦କି.ମି. ପରିସରର ଜମି ମଧ୍ୟ କମ୍ ପଡ଼ିବ।

କାଶୀପୁରରେ ଉତ୍କଳ ଆଲୁମିନା କମ୍ପାନୀକୁ ଛାଡ଼ିଦେଲେ ଲାର୍ସନ୍ ଆଣ୍ଡ୍ ଟ୍ୟୁବ୍ରୋ ଓ ଆରବ୍ ଆଲୁମିନା କମ୍ପାନୀ ମଧ୍ୟ ଶୃଙ୍ଗେର ଅଞ୍ଚଳରେ ଓ ହିଣ୍ଡାଲ୍‌କୋ କମ୍ପାନୀ କୋଡ଼ିଙ୍ଗାମାଳୀ (ପୁହୁଣ୍ଡି

ଅଞ୍ଚଳରେ) ଆସୁଛି। (ଏ ସମ୍ପର୍କରେ ଶ୍ରୀ ଦାଶ ମଧ କହିଛନ୍ତି ଯେ 'ଉତ୍କଳ ଆଲୁମିନା କମ୍ପାନୀକୁ ଛାଡ଼ି ଯଦି ଆଉ କେଉଁ କମ୍ପାନୀ ଏଠାରେ କରାଯାଏ ତେବେ ଏ ଅଞ୍ଚଳରେ ପ୍ରାକୃତିକ ସମ୍ପଦ ବ୍ୟତୀତ ଏହାର ପରିବେଶ ଉପରେ ପ୍ରଚଣ୍ଡ ପ୍ରଭାବ ପକାଇବ।'

## ସ୍ୱାସ୍ଥ୍ୟ

ଏ ପ୍ରକାରର କମ୍ପାନୀ ସ୍ୱାସ୍ଥ୍ୟ ଉପରେ ମଧ ପ୍ରଚଣ୍ଡ ପ୍ରଭାବ ପକାଇବ। ନାଲ୍‌କୋର ଆଲୁମିନା ପ୍ଲାଣ୍ଟ୍ (ଦାମନଯୋଡ଼ି ଠାରେ) ଏହାର ଦୂଷିତ ବାୟୁ ଓ ପାଣି ସ୍ଥାନୀୟ ଲୋକଙ୍କ ଉପରେ ଖରାପ ପ୍ରଭାବ ପକାଉଛି। ଫ୍ଲୋରାଇଡ଼ ହେତୁ ଗାଇଗୋରୁଙ୍କ ଦାନ୍ତ ଝଡ଼ିପଡ଼ିବା, ହାଡ଼ ବଙ୍କା ହେବା ଓ ସ୍ଥାନୀୟ ଗ୍ରାମବାସୀଙ୍କ ସ୍ୱାସ୍ଥ୍ୟହାନୀ କରିଛି। ନାଲ୍‌କୋ ନିକଟସ୍ଥ ଗାଁରେ ଗାଇଗୋରୁଙ୍କ ସଂଖ୍ୟା ୩୦୦୦ରୁ ୧୦୦କୁ ଖସିଆସିଛି।

ସେହିପରି ଆଲ୍‌କାନ୍ କାମ କରୁଥିବା ତାଜିକ୍‌ସ୍ଥାନ ଦେଶର ତୁରୁସୁନ୍‌ଓ୍ୱାଡ଼େ ସହର ଓ ଆଲ୍‌କାନ୍‌ର ନିଜ ଦେଶ କାନାଡ଼ାର କ୍ୟୁବେକ ସହରରେ ଆଲ୍‌କାନ୍ ନିଜର ଆଲୁମିନା ପ୍ଲାଣ୍ଟ୍ ପାଇଁ ଅସ୍ୱାସ୍ଥ୍ୟକର ପରିବେଶ ଦେଖାଦେଇଛି। ବିଶେଷକରି କ୍ୟୁବେକ ସହରରେ ଜନ୍ମିତ ଶିଶୁଙ୍କ ଠାରେ ବିଭିନ୍ନ ଶାରୀରିକ ଓ ମାନସିକ ବିକୃତି ଦେଖାଯାଉଛି। ସେ ଦେଶର ଅନ୍ୟ ସହର ତୁଳନାରେ କ୍ୟୁବେକ ସହରରେ ସବୁଠାରୁ ଅଧିକ ବ୍ୟକ୍ତିଙ୍କର ଟ୍ୟୁମର ଦ୍ୱାରା ମୃତ୍ୟୁ ହେବା ମଧ ଦେଖାଯାଉଛି।

ଏହି ଟ୍ରିବ୍ୟୁନାଲ ନିଜର ଅନୁଧାନ ସମୟରେ ଜାଣିବାକୁ ପାଇଲା ଯେ ସ୍ଥାନୀୟ ଲୋକଙ୍କ ପାଖରେ ପ୍ଲାଣ୍ଟ୍‌ର ସ୍ୱାସ୍ଥ୍ୟ ଉପରେ ପ୍ରଭାବ ସମ୍ପର୍କରେ କୌଣସି ତଥ୍ୟ ନାହିଁ। ଆଲୁମିନା ପ୍ଲାଣ୍ଟ୍‌ରେ କଷ୍ଟିକ ସୋଡ଼ା ବ୍ୟବହାର ହେତୁ ସଲଫର ଡାଇଅକ୍ସାଇଡ୍ ଓ ସଲଫର ମନୋକ୍ସାଇଡ୍ ଗ୍ୟାସ ବାୟୁମଣ୍ଡଳକୁ ନିଶ୍ଚୟ ଯିବ (ପ୍ରତି ଏକ ଟନ୍ ଆଲୁମିନିୟମ ପାଇଁ ସମୁଦାୟ ୧୩ଟନ୍ ସଲଫର ଅକ୍ସାଇଡ଼ ଗ୍ୟାସ ବାୟୁମଣ୍ଡଳକୁ ଯାଇଥାଏ)। ଏହି ଗ୍ୟାସ ମଣିଷ ଜୀବନ ପାଇଁ କ୍ଷତିକାରକ ଓ ଜୀବନ ମଧ ନେଇଥାଏ। କାଶୀପୁର ଅଞ୍ଚଳରେ ଏହା ଜଙ୍ଗଲ ମଧ ନଷ୍ଟ କରିବ।

ଏହି ସମସ୍ତ ବିଷୟ ପାଇଁ ଓଡ଼ିଶା ବିଧାନସଭାର ଗୃହ କମିଟି ନିଜର ଗସ୍ତ ସମୟରେ ନାଲ୍‌କୋର ପ୍ରଦୂଷଣକୁ ସାମ୍ନାରେ ରଖି ସମାନ ପ୍ରକାରର ପ୍ରଦୂଷଣର ସମ୍ଭାବନା କାଶୀପୁର ଅଞ୍ଚଳରେ ରହିଛି ବୋଲି କହିଛି। ଏ କ୍ଷେତ୍ରରେ ଉତ୍କଳ ଆଲୁମିନା ଦେଇଥିବା ପରିଚାଳନା ଯୋଜନା (EMP) ୧୦ବର୍ଷର ପୁରୁଣା ଓ ଏଥିରେ ବହୁତ କଥା ସ୍ପଷ୍ଟ ନୁହେଁ ବୋଲି କମିଟି ନିଜର ରିପୋର୍ଟରେ ଉଲ୍ଲେଖ କରିଛି। ଏଥିପାଇଁ କମିଟି ସରକାରଙ୍କୁ ଦକ୍ଷ ପରିବେଶବିତ୍‌ମାନଙ୍କୁ ନେଇ ଏକ କମିଟି ଗଠନ କରି ଏହାର ରିପୋର୍ଟ ତୁରନ୍ତ ଦେବା ପାଇଁ ପ୍ରସ୍ତାବ ଦେଇଛି।

ବର୍ତ୍ତମାନ ଏ ଟ୍ରିବ୍ୟୁନାଲ (I.P.T) ଅନୁଭବ କରୁଛି ଯେ ଉତ୍କଳ ଆଲୁମିନା ପ୍ରକଳ୍ପ ସମ୍ପୂର୍ଣ୍ଣ ବେନିୟମ ଅଟେ। ଏହା ପରେ ଉତ୍କଳ ଆଲୁମିନାର ଥଇଥାନ ଓ ପୁନର୍ବାସ ନୀତି ସମ୍ପର୍କରେ ଆଲୋଚନା କରିବାର କୌଣସି ଯଥାର୍ଥତା ନାହିଁ। ମାତ୍ର ଯେଉଁଭଳି ଓଡ଼ିଶା ସରକାର ଓ ଉତ୍କଳ ଆଲୁମିନା କମ୍ପାନୀ କହୁଛନ୍ତି ଯେ ଏହି ପ୍ରକଳ୍ପ ଦ୍ୱାରା ଏ ଅଞ୍ଚଳର ବିକାଶ ହେବ ଓ ଏହାଦ୍ୱାରା କାଶୀପୁରର ଦଳିତ ଓ ଆଦିବାସୀମାନଙ୍କର ଆର୍ଥିକ ଓ ସାମାଜିକ ଉନ୍ନତି ହେବ ତେଣୁ ଉତ୍କଳ ଆଲୁମିନା କମ୍ପାନୀର ଥଇଥାନ ନୀତିକୁ ଆଲୋଚନା କରିବା ଆମ୍ଭେମାନେ ଉଚିତ ମନେକରୁଛୁ।

## ଥଇଥାନ ଓ ପୁନର୍ବାସର ଇତିହାସ

ପୂର୍ବରୁ ବହୁ ପ୍ରକଳ୍ପରେ ବିଶେଷ କରି ଖଣି ପ୍ରକଳ୍ପରେ ଦେଖାଯାଉଛି ଯେ ଖଣି ପୂର୍ବରୁ ଓ ପରେ ସ୍ଥାନୀୟ ବାସିନ୍ଦାଙ୍କ ଆର୍ଥିକ ସ୍ଥିତି ଓ ସାମାଜିକ ସ୍ଥିତିରେ ବହୁତ ପରିବର୍ତ୍ତନ ଘଟିଛି। ବହୁଜାଗାରେ ଏକଥା ଦେଖାଯାଇଛି ଯେ ସେସବୁ ସ୍ଥାନରେ ଆଦିବାସୀ ଗୋଷ୍ଠୀ ଖଣି ହେବା ପରେ ପୁଣି ନିଜର ଅର୍ଥନୈତିକ ସ୍ଥିତିକୁ ଫେରିବାରେ ସକ୍ଷମ ହୋଇନାହିଁ। ବହୁ କ୍ଷେତ୍ରରେ ଖଣିଦ୍ୱାରା କ୍ଷତିଗ୍ରସ୍ତ ପରିବାର କୌଣସି କାମଧନ୍ଦା ନପାଇ ନିଜେ ଠିକା ଶ୍ରମିକ ହୋଇଯାଇଛନ୍ତି ନହେଲେ ସେ ସ୍ଥାନ ଛାଡ଼ି ସହରକୁ ଚାଲିଯାଇଛନ୍ତି ଓ ସହରରେ ମଧ୍ୟ ଘୋର ଅଭାବ ମଧ୍ୟରେ ଜୀବନ ବିତାଇଛନ୍ତି। ଏହିସବୁ ପ୍ରକଳ୍ପ ଦ୍ୱାରା କ୍ଷତିଗ୍ରସ୍ତ ଲୋକେ ବିଶେଷ କରି ମହିଳା ଓ ବୟସ୍କ ପୁରୁଷମାନେ ଘୋର ଦାରିଦ୍ର୍ୟ ମଧ୍ୟରେ ଜୀବନ ବିତାଉଛନ୍ତି।

କେବଳ କିଛି ଟଙ୍କା ସାହାଯ୍ୟ ଦେଇଦେଲେ ସେମାନଙ୍କ ଆର୍ଥିକ ସ୍ଥିତିର କୌଣସି ବିକାଶ ହୋଇନଥାଏ। ଉଦାହରଣସ୍ୱରୂପ ପ୍ରକଳ୍ପ ଦ୍ୱାରା କ୍ଷତିଗ୍ରସ୍ତ ଲୋକେ ପ୍ରକଳ୍ପରେ ଟଙ୍କା ପାଇଲା ପରେ ବହୁତ କମ୍ ପରିବାର ନିଜର ସେହିଭଳି ଜମି କିଣିବାରେ ସମର୍ଥ ହୋଇଛନ୍ତି। ଆମ ଦେଶରେ ପ୍ରକଳ୍ପ ହେବା ପରେ ଉପଯୁକ୍ତ ଥଇଥାନ ନହୋଇ ପାରିବାର ଏକ ଦୀର୍ଘ ଇତିହାସ ରହିଛି। ଭାରତ ସ୍ୱାଧୀନ ହେବା ପରେ ଏହି ସବୁ ବୃହତ୍ ପ୍ରକଳ୍ପ ଦ୍ୱାରା ୧୯୫୦-୯୦ ମଧ୍ୟରେ ପ୍ରାୟ ୩୦୦ ଲକ୍ଷ ଲୋକ ବିସ୍ଥାପିତ ହେଲେଣି ଓ ସେମାନଙ୍କ ମଧ୍ୟରୁ କେବଳ ଖଣିଦ୍ୱାରା ୨୫ଲକ୍ଷ ଲୋକ ବିସ୍ଥାପିତ ହୋଇଛନ୍ତି। ଏହାର ତିନି-ଚତୁର୍ଥାଂଶ ଲୋକ ଅର୍ଥାତ୍ ୧୮ ଲକ୍ଷ ଲୋକ ଏବେବି ଥଇଥାନ ହୋଇନାହାନ୍ତି। ୱାଲଟର ଫର୍ଣ୍ଣାଣ୍ଡେସ୍ ଓ ମହମ୍ମଦ ଅସିଫ୍‌ଙ୍କ ରିପୋର୍ଟ ଅନୁସାରେ ପ୍ରାୟ ୪,୧୦,୧୩୭ ଏକର ଜମି ୧୯୫୧-୯୫ ମଧ୍ୟରେ କେବଳ ଖଣି ଓ ବୃହତ୍ ପ୍ରକଳ୍ପ ପାଇଁ ଅକ୍ତିଆର କରାଯାଇଛି। ୧୯୫୪ ମସିହାରେ ରାଉରକେଲା ଷ୍ଟିଲପ୍ଲାଣ୍ଟ ଓ ମନ୍ଦିରା ଡ୍ୟାମ ପ୍ରକଳ୍ପ ପାଇଁ ବିସ୍ଥାପିତ ହୋଇଥିବା ଲୋକେ ଏବେବି ଥଇଥାନ ହୋଇନାହାନ୍ତି (ଏହି ସମାନ କଥା ହୀରାକୁଦ ଓ ଇନ୍ଦ୍ରାବତୀ

ନଦୀବନ୍ଧ ଯୋଜନା ଅଞ୍ଚଳରେ ଘଟିଛି) । ନାଲକୋ ଦ୍ୱାରା ଦାମନଯୋଡ଼ି ଅଞ୍ଚଳର ଲୋକେ ଏବେ ବି ଉପଯୁକ୍ତ ଭାବରେ ଥଇଥାନ ହୋଇନାହାନ୍ତି ।

ଓଡ଼ିଶାରେ ଏହିସବୁ ବିକାଶମୂଳକ ପ୍ରକଳ୍ପ ଦ୍ୱାରା ସ୍ଥାନୀୟ ଲୋକେ ଆହୁରି ଗରିବ ହେବାର ବହୁ ଦୃଷ୍ଟାନ୍ତ ରହିଛି । କେବଳ ନାଲ୍କୋ ପ୍ରକଳ୍ପ ଦ୍ୱାରା ୧୦୦ ପ୍ରତିଶତ ପରିବାର ମଧ୍ୟରୁ ୨୦% ପରିବାର ପ୍ରକଳ୍ପ ଆଗରୁ ଜମି ହରାଇଥିଲେ ଓ ପରେ ପ୍ରାୟ ୮୮% ଲୋକ ଭୂମିହୀନ ହୋଇଗଲେ ।

ଓଡ଼ିଶାରେ ଏତେବର୍ଷର ଥଇଥାନ ପରେ ୨୦୦୬ରେ ୟୁ.ଏନ୍.ଡି.ପି ଓ ଡି.ଏଫ୍ଆଇ.ଡ଼ିର ସହାୟତାରେ ଓଡ଼ିଶା ସରକାର ନୂତନ ଥଇଥାନ ନୀତି ଘୋଷଣା କରିଛନ୍ତି । ମାତ୍ର ଏହାକୁ ଅତୀତର ଅନୁଭୂତି ଓ ଏବର ନୂତନ ପ୍ରକଳ୍ପର ଥଇଥାନ ନୀତି ଅନୁସାରେ ସମୀକ୍ଷା ଆବଶ୍ୟକ ।

ଟେବୁଲ - ୨

| ବିସ୍ଥାପନ କିପରି ନୂତନ ଗରିବୀ ତିଆରି କରୁଛି - ଓଡ଼ିଶାରେ ଜମିହୀନ ପରିବାର | | | |
|---|---|---|---|
| ପ୍ରକଳ୍ପ | ବିସ୍ଥାପିତ ପରିବାର | ବିସ୍ଥାପିତଙ୍କ ମଧ୍ୟରେ ଜମିହୀନଙ୍କ ସଂଖ୍ୟା | |
| | | ବିସ୍ଥାପନ ପୂର୍ବରୁ | ବିସ୍ଥାପନ ପରେ |
| ସମଲ ବ୍ୟାରେଜ | ୩୧୮ | ୨୪ | ୩୮ |
| ITPS | ୪୪ | ୧୨ | ୭୫ |
| ଇବ୍ ଭ୍ୟାଲି | ୩୯ | ୫୬ | ୯୨ |
| UKP | ୭୪ | ୧୨ | ୩୧ |
| ନାଲ୍କୋ (ଖଣି) | ୧୦୦ | ୨୦ | ୮୮ |
| ହାଲ୍ | ୪୪ | ୩୬ | ୫୯ |

## ଉତ୍କଳ ଆଲୁମିନାର ଥଇଥାନ ନୀତି

ଉତ୍କଳ ଆଲୁମିନା ତରଫରୁ ଦିଆଯାଇଥିବା ତଥ୍ୟ ଅନୁସାରେ ଏହାର ଆଲୁମିନା ପ୍ଲାଣ୍ଟ୍ ଦ୍ୱାରା କେନ୍ଦୁଖୁଣ୍ଟି, ରାମିନେଡ଼ା ଓ ଡଳକରାଳ ଗ୍ରାମର ୧୪୮ ପରିବାର ବିସ୍ଥାପିତ ହେବେ । ଏହାର ବାଫଲିମାଳୀ ଖଣି ଅଞ୍ଚଳରେ କୌଣସି ବିସ୍ଥାପନ ହେବ ନାହିଁ । ସମୁଦାୟ ୨୪ ଖଣ୍ଡ ଗ୍ରାମର ଲୋକେ ଆଂଶିକ ଭାବରେ କ୍ଷତିଗ୍ରସ୍ତ ବା ପ୍ରଭାବିତ ହେବେ । ସମୁଦାୟ ୨୦୦୫ ଲୋକ ସମଗ୍ର ପ୍ରକଳ୍ପ ଦ୍ୱାରା ପ୍ରଭାବିତ ହେବେ ବୋଲି କମ୍ପାନୀ କହୁଛି ।

ଯେହେତୁ ଓଡ଼ିଶା ସରକାରଙ୍କ ବିସ୍ଥାପନ ଓ ଥଇଥାନ ସମ୍ପର୍କରେ କୌଣସି ସ୍ୱଷ୍ଟ ନୀତି

ନାହିଁ ତେଣୁ ଜମି ଅଧିଗ୍ରହଣ ନିୟମ ୧୮୯୪ ଅନୁସାରେ ୨୦୦୫ ଲୋକ କ୍ଷତିପୂରଣ ପାଇବା ପାଇଁ ଯୋଗ୍ୟ ଅଟନ୍ତି। ଉତ୍କଳ ଆଲୁମିନାର ମତ ଅନୁସାରେ ଏହି ନୀତି ରାୟଗଡ଼ା ଜିଲ୍ଲା ପରିଷଦ ଦ୍ୱାରା ସେପ୍ଟେମ୍ବର ୭, ୨୦୦୪ରେ ଗୃହୀତ ହୋଇଯାଇଛି।

୧୯୯୬ ମସିହାରେ ଉତ୍କଳ ଆଲୁମିନା କମ୍ପାନୀ ତରଫରୁ ଏକର ପିଛା ୧୫,୦୦୦ ଟଙ୍କାରୁ ୫୦, ୦୦୦(ଜମିର କିସମ ଅନୁସାରେ) ଟଙ୍କା କ୍ଷତିପୂରଣ ଦିଆଯାଇଥିଲା। ପରେ ଆନ୍ଦୋଳନ ହେତୁ ଏହାକୁ ଏକର ପିଛା ଜମିର କିସମ ଅନୁସାରେ ୧, ୦୫,୦୦୦ ଟଙ୍କାରୁ ୧,୫୦,୦୦୦ ଟଙ୍କା ଦେବାକୁ ପରେ ଘୋଷଣା କଲେ। ଘରଡ଼ିହ ଜମି ପାଇଁ ଏକର ପିଛା (ଅର୍ଥାତ୍ ୧୦୦ଡେସିମଲକୁ) ୮ଲକ୍ଷ ଟଙ୍କା ଦେବା ପାଇଁ ଘୋଷଣା କଲେ। ଆଦିବାସୀ ଅଞ୍ଚଳରେ ଘରଗୁଡ଼ିକ ଏକ ଡେସିମଲରୁ ଦୁଇ ଡେସିମଲ ମଧ୍ୟରେ ଥିବା ହେତୁ ୮୦୦୦ରୁ ୧୬,୦୦୦ ଟଙ୍କା ପର୍ଯ୍ୟନ୍ତ ପାଇବେ। ପ୍ରକଳ୍ପ ଦ୍ୱାରା ବିସ୍ଥାପିତ ପରିବାରଙ୍କୁ ଘର ଯୋଗାଇଦେବା ଓ ଘର ନମିଳିଲେ ୫୦,୦୦୦ ଟଙ୍କା ଦେବା ପାଇଁ ବ୍ୟବସ୍ଥା ଅଛି। UAILର ଜମି ବଦଳରେ ଜମି ଦେବାର କୌଣସି ବ୍ୟବସ୍ଥା ନାହିଁ।

ପରିବେଶ ଅନୁମତି ମିଳିବା ସମୟରେ ଉତ୍କଳ ଆଲୁମିନା କମ୍ପାନୀ (UAIL) ସହିତ ଚୁକ୍ତି ହୋଇଥିଲା ଯେ ସମଗ୍ର ଚାକିରୀର ୩୦% ଚାକିରୀ ସ୍ଥାନୀୟ ଲୋକଙ୍କୁ ଦିଆଯିବ। UAIL ସମୁଦାୟ ୧୫୦୦ ଲୋକଙ୍କୁ ଚାକିରୀ ଦେବ ବୋଲି କହୁଛି। କିନ୍ତୁ ଆଜିବି ବିସ୍ଥାପିତ ପରିବାରଙ୍କୁ UAIL ତରଫରୁ ଚାକିରୀ ଦେବାର କୌଣସି ଗ୍ୟାରେଣ୍ଟି ଦିଆଯାଇ ନାହିଁ। କେବଳ କଥାରେ ଚାକିରୀ ଦେବାର ପ୍ରତିଶ୍ରୁତି ଦିଆଯିବା ସହିତ ଚାକିରୀ ନମିଳିଲେ ଏକକାଳୀନ ୫୦,୦୦୦ ଟଙ୍କା ଦେବାର ପ୍ରତିଶ୍ରୁତି ଲୋକଙ୍କୁ ଦିଆଯାଉଥିବା କଥା ଟ୍ରିବ୍ୟୁନାଲ ଜାଣିପାରିଛି।

## UAIL କମ୍ପାନୀର ଥଇଥାନ ନୀତିର ସମୀକ୍ଷା

ଏକଥା ଟ୍ରିବ୍ୟୁନାଲ ନିକଟରେ ସ୍ପଷ୍ଟ ହେଲା ଯେ UAIL ତରଫରୁ ଲିଖିତ ଆକାରରେ ଓ ସ୍ଥାନୀୟ ଲୋକଙ୍କୁ ସମ୍ପୂର୍ଣ୍ଣ ଭାବରେ ବୁଝାପଡ଼ିଲା ଭଳି ଭାଷାରେ କୌଣସି ପ୍ରକାରର ଥଇଥାନ ନୀତିକୁ ଲୋକଙ୍କ ନିକଟରେ ଉପସ୍ଥାପନ କରାଯାଇ ନାହିଁ। ଯଦିଓ ଏହି ପ୍ୟାକେଜ ଇଣ୍ଟରନେଟ୍‌ରେ ଉପଲବ୍ଧ। ମାତ୍ର କେବଳ ମୁହଁରେ ପ୍ରତିଶ୍ରୁତି ଦେବା ବ୍ୟତୀତ ଅନ୍ୟ କୌଣସି ଉଦ୍ୟମ କମ୍ପାନୀ ତରଫରୁ କରାଯାଇ ନାହିଁ।

ଯଦିଓ କମ୍ପାନୀ ତରଫରୁ ୧୯୯୯ ମସିହାରେ ଓଡ଼ିଆରେ ଏହାର ଏକ ନକଲ ସ୍ଥାନୀୟ ଲୋକଙ୍କ ଭାଷାରେ ଦିଆଯାଇଛି, ମାତ୍ର ଟ୍ରିବ୍ୟୁନାଲ୍‌ର ଏହାର ସତ୍ୟତା ଉପରେ ସନ୍ଦେହ ରହିଛି। ପରେ ପ୍ୟାକେଜର ବହୁ ପରିବର୍ତ୍ତନ କରାଯାଇ ୨୦୦୪ରେ ଏହାକୁ ପୂର୍ଣ୍ଣାଙ୍ଗ କରାଯାଇଛି। ମାତ୍ର ଏହି ନୂତନ ପ୍ୟାକେଜ ଲିଖିତ ଆକାରରେ ସ୍ଥାନୀୟ ଲୋକଙ୍କୁ ଯୋଗାଇ ଦିଆଯାଇ ନାହିଁ। ଅନ୍ୟପଟରେ ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦ ତରଫରୁ ଏହି ପ୍ୟାକେଜ

ସମ୍ପର୍କରେ ଓ ଏହି ପ୍ରକଳ୍ପର ଅର୍ଥନୈତିକ ଓ ସାମାଜିକ ପ୍ରଭାବ ସମ୍ପର୍କରେ ଜାଣିବା ପାଇଁ ବାରମ୍ବାର ଅନୁରୋଧ କରାଯାଇଥିଲେ ମଧ୍ୟ ଏଭଳି ଅନୁରୋଧକୁ UAIL ତରଫରୁ କୌଣସି ଗୁରୁତ୍ୱ ଦିଆଯାଇ ନାହିଁ । ଏହାପରେ ଲୋକମାନଙ୍କ ପାଖରେ ପ୍ରକଳ୍ପ ସମ୍ବନ୍ଧରେ କୌଣସି ବିସ୍ତୃତ ତଥ୍ୟ ନାହିଁ । ଉଦାହରଣ ସ୍ୱରୂପ : ଟ୍ରିବ୍ୟୁନାଲ ସାମ୍ନାରେ UAILର ଯେଉଁଲୋକ ସାକ୍ଷ୍ୟ ରଖିଥିଲେ ସେମାନେ ଜମି ବଦଳରେ ଜମି ଦିଆଯାଇଥିବା କହିଥିଲେ ମଧ୍ୟ ଏଦିଗରେ ନିର୍ଦ୍ଦିଷ୍ଟ ଭାବରେ କେଉଁ ଅଞ୍ଚଳରେ କାହାକୁ ଦିଆଯାଇଥିବା କଥା କହିନଥିଲେ । ଏହାସହିତ ଓଡ଼ିଶା ବିଧାନସଭାର ଗୃହ କମିଟି ନିଜର ରିପୋର୍ଟରେ କାଶୀପୁର ପରି ଏକ ଆଦିବାସୀ ବହୁଳ ଅଞ୍ଚଳ ଓ ସମ୍ବିଧାନର ପଞ୍ଚମ ଅନୁଚ୍ଛେଦରେ ତାଲିକାଭୁକ୍ତ ଅଞ୍ଚଳରେ ଜମି ବଦଳରେ ଜମି ଦେବାର ଆବଶ୍ୟକତା କଥା ନିଜ ରିପୋର୍ଟରେ ଉଲ୍ଲେଖ କରିଛନ୍ତି । UAILର ତଥ୍ୟ ଅନୁସାରେ ନିଯୁକ୍ତ କମ୍ୟୁନିକେଟର ଓ ମୋଟିଭେଟରମାନେ ମୁହଁରେ କ୍ଷତିପୂରଣ ନେଇଥିବା ଲୋକଙ୍କୁ ବହୁତ କିଛି ପ୍ରତିଶ୍ରୁତି ଦେଇଥିବା ଫଳରେ କ୍ଷତିପୂରଣ ନେଇଥିବା ଲୋକ ପରେ ଏହା ମିଥ୍ୟା ବୋଲି ଜାଣିପାରିଛି ବୋଲି ଟ୍ରିବ୍ୟୁନାଲର ହୃଦବୋଧ ହେଉଛି ।

UAILର ଥଇଥାନ ନୀତି ବାଫଲିମାଳୀ ଚାରିପାଖେ ଥିବା ଜମିରେ ଚାଷ କରୁଥିବା ଚାଷୀଙ୍କ ପାଇଁ ସମ୍ପୂର୍ଣ୍ଣ ନୀରବ । ସମଗ୍ର ଖଣି ଓ ପ୍ଲାଣ୍ଟ୍ ଅଞ୍ଚଳରେ କଟିବାକୁ ଥିବା ବୃକ୍ଷର୍ କୌଣସି କ୍ଷତିପୂରଣ UAIL ତରଫରୁ ଦିଆଯାଇନାହିଁ । ଜମି ଓ ଘର ଉଭୟ ହରାଉଥିବା ଲୋକଙ୍କ ପାଇଁ ମଧ୍ୟ ଚାକିରୀ ମିଳିବାର କୌଣସି ଗ୍ୟାରେଣ୍ଟି ଦିଆଯାଇ ନାହିଁ ।

ତେଣୁ ଟ୍ରିବ୍ୟୁନାଲ ଏକଥା ଉପଲବ୍ଧ କରୁଛି ଯେ ସ୍ଥାନୀୟ ଲୋକେ ଏହି ପ୍ରକଳ୍ପ ଦ୍ୱାରା ଯାହା ହରାଇବେ, ତା'ବଦଳରେ ସେମାନଙ୍କୁ ମିଳୁଥିବା କ୍ଷତିପୂରଣ ସମୁଦ୍ରକୁ ଶଙ୍ଖେ । ଅନ୍ୟପଟରେ ଏହି ସମୟ ମଧ୍ୟରେ କମ୍ପାନୀ ବହୁ ଗୁଣ ଲାଭ କରିନେବ । ଏହି ସମାନ କଥା ବେଦାନ୍ତ କମ୍ପାନୀ ଅଞ୍ଚଳରେ ମଧ୍ୟ ଦେଖାଦେଇଛି । ସେମାନଙ୍କୁ ମଧ୍ୟ ଜମି ବଦଳରେ କିଛି ଟଙ୍କା କେବଳ ଦିଆଯାଉଛି । ଏହି ଉଭୟ କ୍ଷେତ୍ରରେ ଏକ ସାଧାରଣ କଥା ହେଲା ଯେ କ୍ଷତିପୂରଣ ଦେବା ସମୟରେ ସ୍ଥାନୀୟ ଲୋକଙ୍କ ମତାମତକୁ କୌଣସି ଗୁରୁତ୍ୱ ଦିଆଯାଉ ନାହିଁ । କେବଳ ବିସ୍ଥାପିତମାନଙ୍କୁ ଶାନ୍ତ କରିବା ପାଇଁ କ୍ଷତିପୂରଣ ନାମକ ଏକ ପ୍ୟାକେଜ ଘୋଷଣା କରିଛନ୍ତି । କିଏ ପ୍ରକୃତରେ କ୍ଷତିଗ୍ରସ୍ତ ହେବେ ଏଦିଗରେ ପ୍ରକଳ୍ପ କ୍ଷତିଗ୍ରସ୍ତଙ୍କ ସଂଖ୍ୟା ଘୋଷଣା କରିବାରେ ଏକ ବହୁ ସଂକ୍ଷିପ୍ତ ଚିତ୍ର ଉଭୟ କମ୍ପାନୀ ଓ ସରକାରଙ୍କ ତରଫରୁ ଦିଆଯାଉଛି । ଯଦି ପ୍ରକୃତରେ ଦେଖାଯିବ, ତେବେ ପ୍ରକଳ୍ପର ପ୍ରକୃତ କ୍ଷତିଗ୍ରସ୍ତ ପରିବାର ସଂଖ୍ୟା ସେମାନଙ୍କ ଦ୍ୱାରା ଦିଆଯାଉଥିବା ସଂଖ୍ୟାଠାରୁ ବହୁତ ଗୁଣ ଅଧିକ ହେବ ।

# କିଏ ପ୍ରକୃତରେ କ୍ଷତିଗ୍ରସ୍ତ ହେଉଛନ୍ତି

UAILର ଥଇଥାନ ପ୍ୟାକେଜକୁ ଦେଖିଲେ ଜଣାଯାଏ ଯେ ଏହା କେବଳ ଜମି ହରାଉଥିବା ଲୋକଙ୍କୁ ପ୍ରକଳ୍ପ ଦ୍ୱାରା କ୍ଷତିଗ୍ରସ୍ତ ପରିବାର ବୋଲି ଗଣୁଛି। ଏହା ବହୁତ ପୁରୁଣାକାଳିଆ କଥା। ପ୍ରକଳ୍ପ ଦ୍ୱାରା ଯେ ଏହା ବ୍ୟତିରେକ ଆହୁରି ଅନ୍ୟ ବହୁଲୋକ ଯେଉଁମାନଙ୍କ ଜୀବନ ଓ ଜୀବିକା ମଧ୍ୟ ପ୍ରକଳ୍ପ ଆସିବା ଦ୍ୱାରା କ୍ଷତିଗ୍ରସ୍ତ ହେବ ସେ ସମ୍ପର୍କରେ UAILର ପ୍ୟାକେଜ ସମ୍ପୂର୍ଣ୍ଣ ନୀରବ'। କେବଳ ଜମି ହରାଉଥିବା ପରିବାରଙ୍କ ସଂଖ୍ୟା ସମସ୍ତ କ୍ଷତିଗ୍ରସ୍ତ ପରିବାରର ସଂଖ୍ୟାର ୨୦% ଅଟେ। ବିସ୍ଥାପିତ ଓ କ୍ଷତିଗ୍ରସ୍ତ ପରିବାର ମଧ୍ୟରେ ସେ ଅଞ୍ଚଳରେ କାମ ହରାଉଥିବା ଲୋକ, ଜମି ହରାଇଥିବା ହେତୁ ପରେ ଗୃହ ମଧ୍ୟ ହରାଇ ଅନ୍ୟସ୍ଥାନକୁ ବିସ୍ଥାପିତ ହେଉଥିବା, ଖାଦ୍ୟର ଅସନ୍ତୁଳନତା ଓ ଅଭାବ ହେତୁ ସ୍ଥାନାନ୍ତର ହେଉଥିବା, ସାମାଜିକ ଅସୁରକ୍ଷା, ସାମାଜିକ ଓ ରାଜନୈତିକ ଅଧିକାର ହରାଉଥିବା ବ୍ୟକ୍ତିକୁ ଏଥିରେ ସମ୍ପୃକ୍ତ କରାଯାଉ ନାହିଁ। ଏହା ସତ୍ୟ ଯେ ନିଜର କୁଟୁମ୍ବ ବା ସମାଜରେ ସମ୍ପର୍କ ହରାଉଥିବା ଓ ସାଂସ୍କୃତିକ ପରିଚୟକୁ ହରାଉଥିବା ଗୋଷ୍ଠୀଗତ ସହଯୋଗକୁ ହରାଉଥିବା ଲୋକଙ୍କୁ କ୍ଷତିଗ୍ରସ୍ତ ତାଲିକାରେ ଗଣାଯାଉ ନାହିଁ।

ଏହି ସମସ୍ତ ବିଷୟକୁ ନେଇ କାଶୀପୁରରେ UAILର ପ୍ରକଳ୍ପ ଦ୍ୱାରା ଅନ୍ୟ ଯେଉଁମାନେ କ୍ଷତିଗ୍ରସ୍ତ ସେମାନେ ହେଲେ;-

(କ) ଯେଉଁ ଚାଷୀମାନେ ଜମି ବଦଳରେ କ୍ଷତିପୂରଣ ଟଙ୍କା ପାଇଥିଲେ ମଧ୍ୟ ସେତିକି ପରିମାଣରେ ଜମି ଘର ନିକଟରେ ପାଉନଥିବା ବ୍ୟକ୍ତି।

(ଖ) ସେହି ଜମିହୀନ ପରିବାର ଯେଉଁମାନେ ପ୍ରକଳ୍ପ ଆସିବା ଆଗରୁ ସେହି ଜମିରେ ମଜୁରୀଲାଗି ନିଜର ଜୀବିକା ପାଳିପାରୁଥିଲେ।

(ଗ) ଗୋଷ୍ଠୀଗତ ସମ୍ପତ୍ତି ଯଥା ଜଙ୍ଗଲ ଓ ଚାରଣଭୂମିରେ ମଧ୍ୟ ଯେଉଁମାନେ ଜୀବିକା ଓ ନିଜ ପରିବାର ଚଳାଉଥିଲେ।

(ଘ) ଯେଉଁମାନଙ୍କ ଯାତାୟାତ ପ୍ରକଳ୍ପ ଆସିବା ଦ୍ୱାରା ବାଧାପ୍ରାପ୍ତ ହେଉଛି।

(ଙ) ଆଲୁମିନା ପ୍ରକଳ୍ପ ଦ୍ୱାରା ବାୟୁ ଓ ଜଳ ପ୍ରଦୂଷଣ ହେଲେ ପରିବେଶ ଦୂଷିତ ହେବ ଏବଂ ଏହାଦ୍ୱାରା ଯେଉଁମାନଙ୍କ ଜମି କ୍ଷତିଗ୍ରସ୍ତ ହେବ,

(ଚ) ଯେଉଁମାନଙ୍କ ଜମି ପାଣିର ଉତ୍ସ ସରିଯିବା ହେତୁ (ବିଶେଷ କରି ଖଣି ଅଞ୍ଚଳରେ) ଫସଲ କ୍ଷତିହେବ ଓ ଦୂଷିତ ଜଳ ଦ୍ୱାରା ଯେଉଁମାନଙ୍କ ଫସଲ ନଷ୍ଟ ହେବ। (ଖଣି ଅଞ୍ଚଳରେ ମାଟି ପଡ଼ି ଜମି କ୍ଷତି ହେବା ଓ ଫସଲ ମଧ୍ୟ ନଷ୍ଟ ହେବ)।

ଏହିସବୁ ବିଷୟକୁ ହିସାବକୁ ନେଇ ଦେଖିଲେ ପ୍ରକୃତ କ୍ଷତିଗ୍ରସ୍ତ ପରିବାରର ସଂଖ୍ୟା ବହୁତ୍ ବଢ଼ିଯିବ। ଉଦାହରଣସ୍ୱରୂପ : ପି.ଏସ୍.ଏସ୍.ପି ତରଫରୁ ଏକ ସର୍ଭେ କରାଯାଇ

କୁହାଯାଇଛି ଯେ କେବଳ ଆଲୁମିନା ପ୍ଲାଣ୍ଟ୍ ପାଇଁ ୪ ୨ ଖଣ୍ଡ ଗ୍ରାମ ଓ ଖଣି ପାଇଁ ୮ ୨ଗ୍ରାମ କ୍ଷତିଗ୍ରସ୍ତ ହେବ। ସର୍ବମୋଟ ୨ ୨,୦୦୦ ଲୋକ କ୍ଷତିଗ୍ରସ୍ତ ହେବେ। ଅନ୍ୟ ଏକ ତଥ୍ୟ ଯେ ୬୦,୦୦୦ଲୋକ କ୍ଷତିଗ୍ରସ୍ତ ହେବେ (ନରଓ୍ୱାଚ୍)। ଏହା UAIL ଦ୍ୱାରା ୨୦୦୫ ଲୋକ କ୍ଷତିଗ୍ରସ୍ତ ହେବାର ଯେଉଁ ହିସାବ ଦିଆଯାଉଛି ସେହି ସଂଖ୍ୟାଠାରୁ ବହୁତ ଅଧିକ। ଏବଂ ଏହି ୨୦୦୫ ଲୋକଙ୍କୁ ଜମି ବଦଳରେ କିଛି ଟଙ୍କା ଦେଇ କ୍ଷତିପୂରଣ ଦିଆଯାଉଛି ବୋଲି କୁହାଯାଇ ପାରିବ ନାହିଁ। ଏହା ବ୍ୟତୀତ UAIL ତରଫରୁ କ୍ଷତିପୂରଣ ପ୍ୟାକେଜରେ କେବଳ ଜମି ପଟ୍ଟାଧାରୀ ଲୋକଙ୍କୁ କ୍ଷତିପୂରଣ ଦେବାର ବ୍ୟବସ୍ଥା କରାଯାଇଛି। କିନ୍ତୁ ଏ ଅଞ୍ଚଳରେ ଏପରି ବହୁ ଲୋକ ଅଛନ୍ତି ଯେଉଁମାନଙ୍କ ଜମି ପ୍ଲାଣ୍ଟ୍ ଦ୍ୱାରା ଯାଉଥିଲେ ମଧ୍ୟ ସେମାନଙ୍କର ପଟ୍ଟା ନାହିଁ(ଉଦାହରଣ : ଦିମୁଣ୍ଡି ଗ୍ରାମ)। ପୁଣି UAIL ଦ୍ୱାରା ଏକଥା କୁହାଯାଇଛି ଯେ ପ୍ଲାଣ୍ଟ ଦ୍ୱାରା ନିଆଯାଉଥିବା ୨୮୦୦ ଏକର ଜମିରୁ ମାତ୍ର ୨ ୨ଏକର ଜମି ଚାଷ ଉପଯୋଗୀ ଅଟେ। ଏହା ଏକ ମିଥ୍ୟା ତଥ୍ୟ। ଆଦିବାସୀମାନଙ୍କ ଚାଷ କରିବାର ପ୍ରଣାଳୀକୁ ସେମାନେ ଏହାଦ୍ୱାରା ବେଖାତିର କରୁଛନ୍ତି।

ଡଙ୍ଗର ଚାଷ ଏ ଅଞ୍ଚଳରେ ଲୋକଙ୍କ ଜୀବନ ଓ ଜୀବିକାର ଏକ ଅଂଶ। ୩୦ ଡିଗ୍ରୀ ସ୍ଲୋପ ବେଳ ଡଙ୍ଗର ଜମିକୁ ପଟ୍ଟା ଦେବାର ବ୍ୟବସ୍ଥା ଓଡ଼ିଶା ସରକାର ୧୯୯୬ରେ କାର୍ଯ୍ୟକାରୀ କରିଥିଲେ। ମାତ୍ର ବାଫଲିମାଳୀ ଖଣି ଓ ପ୍ଲାଣ୍ଟ୍ ଅଞ୍ଚଳରେ ଡଙ୍ଗର ଜମିରେ ପଟ୍ଟା ଦେବା ବ୍ୟବସ୍ଥାକୁ ଲାଗୁ କରାନଯାଇ ଜାଣିଜାଣି ନିଜସ୍ୱ ଅଧିକାରରେ ଥିବା ଏହି ଜମିକୁ ସରକାରୀ ଜମି ବୋଲି ଘୋଷଣା କରାଯାଇଛି ଓ ଏହାର କୌଣସି କ୍ଷତିପୂରଣ ଘୋଷଣା କରାଯାଇ ନାହିଁ। ଏହା ବ୍ୟତୀତ ଜଙ୍ଗଲ ଜମି ଯାହା ଉପରେ ସ୍ଥାନୀୟ ଲୋକେ ଏତେ ନିର୍ଭରଶୀଳ ହେଉଥିଲେ ମଧ୍ୟ କୌଣସି କ୍ଷତିପୂରଣ ଦିଆଯାଉ ନାହିଁ। ବାଫଲିମାଳି ଚାରିପଟେ ଜମି ଓ ଜଙ୍ଗଲ ଉପରେ ପାଇକୁ ପାଖାଲ ଓ ମାଇକଞ୍ଚ ଗାଁର ଲୋକେ ନିର୍ଭର କରୁଥିଲେ ମଧ୍ୟ ସେମାନଙ୍କୁ କ୍ଷତିପୂରଣ ତାଲିକାରେ ନିଆଯାଉନାହିଁ। ଏକଥା ଗୃହ କମିଟି ରିପୋର୍ଟରେ ମଧ୍ୟ ସରକାରୀ ଜମିକୁ ଅଧିକ ଦିନ ଧରି ଆଦିବାସୀଙ୍କ ଅକ୍ତିଆରରେ ଥିଲେ ତାହାକୁ ଆଦିବାସୀଙ୍କୁ ହସ୍ତାନ୍ତର କରିବାର ପ୍ରସ୍ତାବ ଦିଆଯାଇଛି।

ଏ ସମ୍ପର୍କରେ ଆଉ ଏକ କଥା ଦେଖାଯାଉଛି ଯେ ଲାଞ୍ଜିଗଡ଼ର ନିୟମଗିରି ପାହାଡ଼ (ବେଦାନ୍ତ ଯେଉଁଠି ଖଣି ଖୋଳିବ) ଚାରିପଟ ଡ଼ଙ୍ଗରିଆ କନ୍ଧଙ୍କ ଏପରି ବହୁତ ଗାଁ ରହିଛି ଯେଉଁଗୁଡ଼ିକ ରେଭିନ୍ୟୁ (ରାଜସ୍ୱ) ବିଭାଗ ଦ୍ୱାରା ଚିହ୍ନଟ କରାଯାଉ ନାହିଁ। ପ୍ରକଳ୍ପ ହେଲେ ଏମାନେ କୌଣସି କ୍ଷତିପୂରଣ ପାଇବେ ନାହିଁ। 'ଯଦି କମ୍ପାନୀ ଆମ ଅଞ୍ଚଳକୁ ଆସେ ତେବେ ହଜାର ହଜାର ଚାଷଜମି ନଷ୍ଟ ହେବ ଓ ଆମ୍ଭେମାନେ ଭିକାରୀ ହୋଇଯିବୁ। ଆମ୍ଭେମାନେ ଆମର ଜମିକୁ ଏପରି ନଷ୍ଟ ହେବାକୁ ଦେବୁନାହିଁ।'

-ଶଙ୍କର ପ୍ରସାଦ ମୁଦୁଲି

## ବିକଳ୍ପ ଜୀବିକା

UAILର ଆକାର ଓ ପୁଞ୍ଜିନିବେଶକୁ ଦେଖିଲେ ଏଥିରେ ଚାକିରୀର ସଂଖ୍ୟା ବହୁତ କମ୍। ଏଥିରୁ ଯାହା ଜଣାପଡ଼େ ସେମାନେ ଅତ୍ୟାଧୁନିକ ଯନ୍ତ୍ରକୌଶଳ ବ୍ୟବହାର କରିବେ। ଏଥିପାଇଁ ଅତି କୁଶଳୀଶ୍ରମିକ ଆବଶ୍ୟକ ଯାହାକି କାଶୀପୁର ପରି କୃଷି ଅଞ୍ଚଳରେ ମିଳିବା କଷ୍ଟ। ଟ୍ରିବ୍ୟୁନାଲ ଏକଥା ଜାଣିବାକୁ ପାଇଲା ଯେ ଏକଦା UAIL ମ୍ୟାନେଜିଙ୍ଗ ଡାଇରେକ୍ଟର ଏସ୍.ପି.ସାଓ୍ୱନ୍ତ କହିଥିଲେ 'UAILକୁ ଆବଶ୍ୟକ ହେଉଥିବା ଅତିକୁଶଳୀ ଶ୍ରମିକ କାଶୀପୁର ଅଞ୍ଚଳରେ ନାହାନ୍ତି।' ଏ କ୍ଷେତ୍ରରେ UAIL ଏହାର ପ୍ରକଳ୍ପ କ୍ଷତିଗ୍ରସ୍ତ ପରିବାରମାନଙ୍କୁ ଯେଉଁମାନେ କି ନିଜର ଜମି ହରାଇବେ ସେମାନଙ୍କୁ କି ପ୍ରକାରର ଜୀବିକା ଦେବ? ଏପରିକି UAIL ତାଲିକା କରିଥିବା ୨୦୦୫ କ୍ଷତିଗ୍ରସ୍ତ ଲୋକଙ୍କ ପାଇଁ ମଧ୍ୟ କୌଣସି ବ୍ୟବସ୍ଥା ନାହିଁ। ଏଥିରୁ ଜଣାପଡ଼େ ଯେ UAIL କେବଳ କେତେକ ଦିନ ମଜୁରିଆ କାମ କିଛିଦିନ ପାଇଁ ଦୈନିକ ୬୦ଟଙ୍କା ଦରରେ ଦେବ। ଏଥିରେ କାମ ନଥିଲେ ମଜୁରୀ ନାହିଁ। ତେଣୁ ଜମି ଥିଲାବାଲା ଲୋକ କ୍ରମଶଃ କାହା ଘରର ଚାକର ହୋଇଯିବ।

ଏପରିକି UAIL ଯଦି ବିସ୍ଥାପିତ ପରିବାରର ଲୋକଙ୍କୁ ଚାକିରି ଦିଏ ତେବେବି ତାହା ସମାଧାନ ନୁହେଁ। କାରଣ ସେମାନଙ୍କ ଜମି ସମଗ୍ର ପରିବାରକୁ କାମ ଓ ଖାଦ୍ୟ ଦେଉଥିଲା ବେଳେ ଚାକିରୀ କେବଳ ପୁରୁଷ ସଭ୍ୟଜଣକୁ ମିଳିବ ଓ ପରିବାରର ଅନ୍ୟମାନଙ୍କ ମଧ୍ୟରେ ଝଗଡ଼ା ଲାଗିବ ସାର ହେବ। ଏହାଦ୍ୱାରା ମହିଳା ଓ ବୟସ୍କ ଲୋକଙ୍କ ପରିସ୍ଥିତି ପରିବାର ମଧ୍ୟରେ ବହୁତ ଖରାପ ହେବ। ପୁଣି ସେହି ଚାକିରୀ କେବଳ ୨୫ବର୍ଷ ପାଇଁ ମିଳିବ। ଏହା ପରେ ସେମାନେ ନିଜର ଜମିକୁ ମଧ୍ୟ ଫେରିପାରିବେ ନାହିଁ। କାରଣ ଜମି ଖରାପ ହେବା ଦ୍ୱାରା ତାହା ଆଉ ଚାଷଉପଯୋଗୀ ହୋଇରହିବନାହିଁ। ତେଣୁ ଆମ୍ଭେମାନେ ବାରମ୍ବାର ଏକଥା ଶୁଣୁଛୁ ଯେ, 'ଚାକିରୀ କାମ ବର୍ଷ ପାଇଁ, ଜମି ମାତ୍ର ପିଢ଼ି ପିଢ଼ି ପାଇଁ'।

'ଏବେ ଆମେମାନେ କାମ କଲେ ଦୁଇମାସ ଖାଉଛୁ। ମୁଁ କାମ କରୁଛି, ମୋ ପାଞ୍ଚପୁଅ କାମ କରୁଛନ୍ତି। ମୋର ବାପା ଓ ଜେଜେ ବାପା ମଧ୍ୟ କାମ କରୁଥିଲେ। ସରକାର ଓ କମ୍ପାନୀ କହୁଛି ଚାକିରୀ ଦେବ। ଏହା କ'ଣ ଆମ ସମସ୍ତଙ୍କୁ ଚାକିରୀ ଦେବ? କମ୍ପାନୀ ଯଦି ବାପାଙ୍କୁ ଦିଏ ତେବେ କ'ଣ ଏହାର ପୁଅକୁ ଦେବ?'

-ବୁଲକା ମିଣିଆକ୍କା।

UAILର ପ୍ରକଳ୍ପ ଦ୍ୱାରା ହାତ୍‌ରୀଗୁଡ଼ା ପଞ୍ଚାୟତରେ ବାଘ୍ରିଝୋଲା, ଦିମୁଣ୍ଡି ଓ କରୋଳ ଗ୍ରାମର ସମସ୍ତ ଜମି ଯାଉଥିଲେ ମଧ୍ୟ ଯେହେତୁ ଘର ଯାଉନାହିଁ ତେଣୁ ସେମାନଙ୍କୁ ବିସ୍ଥାପିତଙ୍କ ତାଲିକାରେ ନିଆଯାଉ ନାହିଁ। ସେମାନଙ୍କ ଯିବା ଆସିବା ରାସ୍ତା ମଧ୍ୟ ବନ୍ଦ ହୋଇଯିବ। ସେମାନେ କାମ ପାଇଁ ଅନ୍ୟ ଅଞ୍ଚଳକୁ ଯିବାକୁ ଅସୁବିଧା ହେବ। ବିଶେଷ କରି ଜମିହୀନ

ଲୋକେ ଯେଉଁମାନେ ଏବେ ଅନ୍ୟର ଜମି ଚାଷ କରି ଚଳୁଛନ୍ତି ସେମାନଙ୍କ ପାଇଁ ପ୍ରକଳ୍ପ ହେଲେ ବହୁତ ଅସୁବିଧା ହେବ। ଲାଞ୍ଜିଗଡ଼ଠାରେ ବେଦାନ୍ତ କମ୍ପାନୀ ଅଧିକ କାମ କରିଯାଇଛି। ଏବେ ଏହାର ସିକ୍ୟୁରିଟି ଲୋକେ ସ୍ଥାନୀୟ ଲୋକେ ଗୋରୁଗାଈ ନେଇ ଯାଉଥିବା ବେଳେ ଓ କାମଧନ୍ଦା ପାଇଁ ଅନ୍ୟଗାଁକୁ ଗଲାବେଳେ ମହିଳା ଓ ପୁରୁଷମାନଙ୍କୁ ବହୁତ ହଇରାଣ କରୁଛନ୍ତି। କାଶୀପୁର ଅଞ୍ଚଳର UAILର ବିସ୍ଥାପିତ ପରିବାର ମାନେ ମଧ୍ୟ ଅଳ୍ପ କିଛି ଦିନ ପରେ କାମଧନ୍ଦା ନପାଇ ଟିକିରି ପରି ଅଣଆଦିବାସୀ ଅଞ୍ଚଳରେ ଦିନ ମଜୁରିଆ ଭାବରେ ନିର୍ଭର କରି ରହିବେ।

କୌଣସି ପ୍ରକଳ୍ପ ହେଲେ ଜମିହୀନଙ୍କ ସ୍ଥିତି ବହୁତ ଖରାପ ହୋଇଯାଏ। କାଶୀପୁର ଅଞ୍ଚଳରେ ଯେହେତୁ ୯୦% ଦଳିତ ଭୂମିହୀନ ସେମାନେ ଚଳିବା କଷ୍ଟ ହୋଇଯିବ। ପ୍ରକଳ୍ପ ଦ୍ୱାରା ଜମିର ଉର୍ବରତା କମିଗଲେ; ପାଣି ଓ ବାୟୁ ଦୂଷିତ ହେଲେ ଏହି ଭୂମିହୀନ ଲୋକେ କାମଧନ୍ଦା ପାଇବେ ନାହିଁ। ତେଣୁ UAIL ଯାହା କହୁଛି ଯେ ଏହା ସମ୍ପୂର୍ଣ୍ଣ ଜୀବିକା ଯୋଗାଇବାରେ ସକ୍ଷମ ହେବ ତାହା ମିଛ କଥା।

'କମ୍ପାନୀ ଆସିଲେ ହଜାର ହଜାର ଆଦିବାସୀ ଦଳିତ ପାଇକ, ମୁଣ୍ଡି ଇତ୍ୟାଦି ସମସ୍ତେ ଏ ଅଞ୍ଚଳ ଛାଡ଼ି ଚାଲିଯିବେ। ଏହା ସହିତ ସେମାନଙ୍କ ସ୍ୱତନ୍ତ୍ର ଜୀବନ ଶୈଳୀ ଓ ସଂସ୍କୃତି - ସେମାନଙ୍କ ପରମ୍ପରା, ଭାଷା, ନୃତ୍ୟ, ବାଦ୍ୟ ଓ ପର୍ବ ମଧ୍ୟ ଏ ମାଟିରୁ ଲୋପ ପାଇଯିବ।'

- ଶଙ୍କର ପ୍ରସାଦ ମୁଦୁଲି

କାଶୀପୁରରେ ପ୍ରାୟ ୮୦ଭାଗ ଲୋକ ଆଦିବାସୀ ଯେଉଁମାନଙ୍କ ମଧ୍ୟରେ କନ୍ଧ, ପରଜା, ଝୋଡ଼ିଆ, ପେଙ୍ଗମାନେ ଅଛନ୍ତି। ଏହି ଆଦିବାସୀମାନେ ଆଜି ପର୍ଯ୍ୟନ୍ତ ମୁଖ୍ୟଧାରାର ସମାଜଠାରୁ ଦୂରରେ ଥାଇ ନିଜର ଭାଷା, ସଂସ୍କୃତି, ଜୀବିକା ଓ ପରିଚୟକୁ ସ୍ୱତନ୍ତ୍ର ଭାବରେ ରଖିପାରିଛନ୍ତି।

UAIL ଆସିବା ଦ୍ୱାରା ଯେଉଁଭଳି ବିସ୍ଥାପନ ହେବ ଓ ପରିବେଶ ଦୂଷିତ ହେବ ଓ ଅଣ ଆଦିବାସୀମାନେ ଯେଉଁଭଳି ଏ ଅଞ୍ଚଳରେ ପ୍ରବେଶ କରିବେ ଏହା ଦ୍ୱାରା ଏମାନଙ୍କ ଜୀବନଶୈଳୀ ଢ଼େର ପରିବର୍ତ୍ତନ ହୋଇଯିବ। ଯେଉଁଭଳି ଭାବରେ UAIL ଏମାନଙ୍କ ପରମ୍ପରା ଓ ସଂସ୍କୃତିକୁ ନଷ୍ଟ କରିବା ସହିତ ଏମାନଙ୍କ ଗୋଷ୍ଠିଗତ ସମ୍ପତ୍ତିକୁ ମଧ୍ୟ ନେଇଯିବ। ଏହାଦ୍ୱାରା ଯେଉଁ କ୍ଷତିହେବ ତାହା ସମ୍ପୂର୍ଣ୍ଣ ଭାବରେ ଅସାମ୍ବିଧାନିକ ଅଟେ। ତାହାପୁଣି ସେମାନଙ୍କ ମତାମତକୁ ଉପେକ୍ଷା କରି କରାଯାଉଛି।

କେବଳ କାଶୀପୁର କାହିଁକି ସାରା ଓଡ଼ିଶାରେ ଏହିଭଳି ବୃହତ୍ ଡ୍ୟାମ ଓ ପ୍ଲାଣ୍ଟ୍ ଯେଉଁଭଳି ଆଦିବାସୀ ଅଞ୍ଚଳରେ ହେବାକୁ ଯାଉଛି ତାହା ବେଶୀ ଦିନ ଆଦିବାସୀ ଜୀବିକା, ଜୀବନ ଶୈଳୀ ଓ ସଂସ୍କୃତିକୁ ରଖିବ ନାହିଁ। ଲାଞ୍ଜିଗଡ଼ ନିୟମଗିରିର ଡଙ୍ଗରିଆ କନ୍ଧମାନଙ୍କ ମଧ୍ୟରେ ଲୋପ ପାଇଯିବାର ସମ୍ଭାବନା ଦେଖାଯାଉଛି। କାରଣ ଏଠାରେ ବେଦାନ୍ତ ନିଜର ବକ୍ସାଇଟ ଖଣି କରିବ। ଏହା କେବଳ ଓଡ଼ିଶା ନୁହେଁ ସମଗ୍ର ଭାରତରେ ଏହି ସ୍ଥିତି ହେବାକୁ ଯାଉଛି। ଏଥିପାଇଁ UAIL ଯେଉଁ କ୍ଷତି ଆଦିବାସୀ ଜୀବନଶୈଳୀରେ କରିବାକୁ ଯାଉଛି ତାହା ଅତି ସମ୍ବେଦନଶୀଳ ସ୍ଥିତି ଅଟେ।

## ଆଦିବାସୀ ଜୀବିକା

କାଶୀପୁର ଅଞ୍ଚଳରେ ଗ୍ରାମଗୁଡ଼ିକ ବାହାର ଜଗତରୁ ଅଲଗା, ଆତ୍ମନିର୍ଭରଶୀଳ ଓ ବଜାର ଉପରେ କମ୍ ନିର୍ଭରଶୀଳ। ଜିନିଷ ଦେବାନେବା ଦ୍ୱାରା ନିଜର ଆବଶ୍ୟକତାକୁ ପୂରଣ କରିଥାନ୍ତି। ୨୦୦୧ ଜନଗଣନା ଅନୁସାରେ ୮୫% ଲୋକ କୃଷିଉପରେ ନିର୍ଭରଶୀଳ। ନିଜ ଜମିରେ ବା କୃଷିଶ୍ରମକ ଭାବରେ ଜୀବିକା ଚଳାଇଥାନ୍ତି। ଏମାନେ ପାରମ୍ପରିକ ରୀତିରେ ଚାଷ କରିଥାନ୍ତି ଓ କେବଳ ନିଜର ଆବଶ୍ୟକତାକୁ ପୂରଣ କରିବା ପାଇଁ ଚାଷ

କରିଥାନ୍ତି । ନିଜର ଜମିର ଫସଲ ନିଜ ପରିବାର ଆବଶ୍ୟକତାକୁ ଛଅ ମାସ ପୂରଣ କରୁଥିବା ହେତୁ ଏଠାରେ ଅଧିକାଂଶ ଚାଷୀ ଡଙ୍ଗର ଚାଷ ଉପରେ ନିର୍ଭର କରିଥାନ୍ତି ।

ଏମାନଙ୍କ ଖାଦ୍ୟ ସୁରକ୍ଷାର ମୁଖ୍ୟ କାରଣ ହେଲା ଏମାନେ ବହୁ ପ୍ରକାରର ଚାଷ କରିଥାନ୍ତି । ଯେମିତିକି ବିଭିନ୍ନ କିସମର ଧାନ, ଡାଲି, ମାଣ୍ଡିଆ, ତୈଳଜାତ ଦ୍ରବ୍ୟ ଓ ପରିବା । ଏଠାରେ ପ୍ରାୟ ୫୦ପ୍ରକାରର ଧାନ ଚାଷ କରାଯାଏ । ଏହିସବୁ କିସମର ଧାନ କମ୍ ପାଣି ଚାହିଁଥାଏ ।

ଏହା ବ୍ୟତୀତ ଜଙ୍ଗଲଜାତ ଦ୍ରବ୍ୟର ବ୍ୟବହାର, କେବେ କେମିତି ମଜୁରିଆ କାମ ଓ ଗୃହପାଳିତ ଜୀବଜନ୍ତୁ ସାମଗ୍ରିକ ଭାବରେ ଏମାନଙ୍କୁ ଖାଦ୍ୟ କ୍ଷେତ୍ରରେ ଆତ୍ମନିର୍ଭରଶୀଳ କରିପାରିଛି । ବିଭିନ୍ନ ପ୍ରକାରର କନ୍ଦା, ଛତୁ ଓ ଫଳ ମଧ୍ୟ ଏମାନଙ୍କ ଖାଦ୍ୟର ଆବଶ୍ୟକତାକୁ ପୂରଣ କରିଥାଏ । କେନ୍ଦୁ ପତ୍ର ଓ ମହୁଲି ଫୁଲ ଏମାନଙ୍କ ଅର୍ଥର ଆବଶ୍ୟକତାକୁ ପୂରଣ କରିଥାଏ ।

ଏପରି ଭାବରେ ଦେଖାଯାଇଛି ଯେ ସମଗ୍ର ଓଡ଼ିଶାରେ ମୁଖ୍ୟ ଆଦିବାସୀ ଅଞ୍ଚଳରେ ୭୦,୦୦୦ ଟନ୍ ମହୁଲ ଫୁଲରୁ ତିଆରି ମହୁଲି ମଦ ତିଆରି ପାଇଁ ଯାଇଥାଏ ଯାହାକି ବାର୍ଷିକ ୫୦୦ ନିୟୁତ ଟଙ୍କାର ଆବଶ୍ୟକତା କରିଥାଏ । ଏହା ବ୍ୟତୀତ ମହୁଲ ଗଛର ଟୋଲଫୁଲର ତିଆରି ଟୋଲତେଲ ମଧ୍ୟ ସାବୁନ୍ ତିଆରିରେ ଲାଗିଥାଏ । ପ୍ରାୟ ୮,୦୦,୦୦୦ ପରିବାର ଏହି ସମଗ୍ର ବ୍ୟବସାୟ ଉପରେ ନିର୍ଭର କରୁଥିବା କଥା ଟ୍ରିବ୍ୟୁନାଲ ଜାଣିବାକୁ ପାଇଲା ।

## ଆଦିବାସୀ ସଂସ୍କୃତି ଓ ପରିଚୟ

ଆଦିବାସୀ ଜୀବନ ଓ ଜୀବିକା ଆଦିବାସୀ ସଂସ୍କୃତି ଓ ପରିଚୟ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଜଙ୍ଗଲ, ଜମି ଓ ଜଳ ସେମାନଙ୍କ ଜୀବନର ଅଂଶ । ଆଦିବାସୀ ସମାଜରେ ମଣିଷ ଓ ପ୍ରକୃତି ମଧ୍ୟରେ ସମ୍ପର୍କ ଅତି ପବିତ୍ର । ପୂର୍ବତନ ବିଧାୟକ ଅଖିଳ ସାଉନ୍ତା କହୁଥିଲେ ଯେ 'ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଆଦିବାସୀ ଜୀବନ ସହିତ ଜମିର ସମ୍ପର୍କ ଅତି ନିବିଡ଼ ବୋଲି ସର୍ବଦା କୁହନ୍ତି । ଜମି ଚାଲିଗଲେ ଆଦିବାସୀ ମରିଯିବ ବୋଲି ସେ ଅନୁଭବ କରୁଥିଲେ । ଆଦିବାସୀ ଜୀବନ ସଂସ୍କୃତି ସହିତ ଜମିର ଏକ ନିବିଡ଼ ସମ୍ପର୍କ ରହିଥିବା କଥା କେହିବି ଅସ୍ୱୀକାର କରିବ ନାହିଁ ।'

'ଆମ୍ଭ ସଂସ୍କୃତି, ଜୀବନ ଓ ଜୀବିକା ସବୁ ମାଟି ଉପରେ ନିର୍ଭରଶୀଳ । ଆମ୍ଭେମାନେ ଦିଆଲୀ ପର୍ବ, ଚଇତିପର୍ବ, ବାଲିପର୍ବ, ନୂଆପର୍ବ, ଭୋଦୁ ପର୍ବ, ପୁଷ ପର୍ବ ଇତ୍ୟାଦି ପାଳିଥାଉ । ଯେତେବେଳେ ଦିଆଲୀ ପର୍ବ ହେବାର ସୂଚନା ଦିଏ ଆମ୍ଭେମାନେ ଖୁସିରେ ନାଚ ଆରମ୍ଭ କରିଥାଉ । ଚଇତି ପର୍ବରେ ଆମ୍ଭେମାନେ ଆଠଦିନ ରଙ୍ଗ ଖେଳୁ । ଏହା ପରେ ଚାରିଦିନ ଆମ୍ଭେମାନେ ଶିକାରରେ ଯାଉ । ଏହାପରେ ଆମ୍ଭେମାନେ ପୁଣି ଚାଷରେ ବ୍ୟସ୍ତ ହେଇଯାଉ । ବୈଶାଖରେ ଆମ୍ଭେମାନେ ଜମିରେ ବୁଣୁ ଓ ବାଲିଯାତ୍ରା ଆରମ୍ଭ ହୁଏ ।

ବାଲିଯାତ୍ରାରେ ବେଜୁଣି (ମହିଳା ପୂଜକ)ମାନେ ବାଲିକୁଦରେ. ମଞ୍ଜି ପୋତନ୍ତି। ଆଠ ଦିନ ନାଚଗୀତ ହୁଏ। ଏହାପରେ ମଞ୍ଜିରୁ ଗଜା ଦେଖି ସେ ବର୍ଷର ଚାଷ ସମ୍ପର୍କରେ ବେଜୁଣି ଓ ଦିଶାରୀମାନେ ପୂର୍ବାନୁମାନ କରନ୍ତି। ଆଷାଢ଼ରେ କୁଲିମାର ପର୍ବ ଦିଆଲି ମାସରେ ଗାଈଗୋରୁଙ୍କୁ ନୂଆ ଫସଲ ଖାଇବାକୁ ଦେଉ। ଯେହେତୁ ଆମ୍ଭେମାନେ ଏକାଠି ପର୍ବ ପାଳୁ, ତେଣୁ ଆମ୍ଭେମାନେ ଖୁସିରେ ଥାଉ, ଆମ୍ଭେମାନେ ପରସ୍ପରକୁ ସାହାଯ୍ୟ କରୁ। ଶାନ୍ତିରେ ରହୁ। ଶିଳ୍ପ ଆସିଲେ ଏ ସମସ୍ତ ନଷ୍ଟ ହୋଇଯିବ।'

- ବୁଲ୍‌କା ମିଣିଆକ୍କା

ବକ୍ସାଇଟ ଖଣି ଓ ଆଲୁମିନା ପ୍ଲାଣ୍ଟ୍ ହେଲେ ଆଦିବାସୀଙ୍କ ହାତରୁ ଜଙ୍ଗଲ ଜମି ଓ ଜଳ ଉପରେ ଥିବା ଅଧିକାର ଚାଲିଯିବ ଓ ସେମାନଙ୍କ ପାରମ୍ପରିକ ଚାଷ ନଷ୍ଟ ହୋଇଯିବ। ସେମାନେ ନିଜର ଜମି ହରାଇ ଦିନ ମଜୁରିଆ ହୋଇଯିବେ।

'ଯଦି ଆମକୁ ଚାକିରୀ ମିଳିବ ତେବେ ଚାଷ କିଏ କରିବ ? ଲୋକ କ'ଣ ଟଙ୍କା ଖାଇବେ ? ଆମେ ଚାଷ କରୁଛୁ ବୋଲି ଦଳିତମାନେ, ବ୍ୟବସାୟୀ, ସାହୁକାରମାନେ ଖାଉଛନ୍ତି। ଆମ୍ଭେମାନେ ଚାଷ କରୁଛୁ ବୋଲି ମୂଷାମାନେ, ସମ୍ବରମାନେ, ଚଢ଼େଇମାନେ ମଧ୍ୟ ଖାଦ୍ୟ ପାଉଛନ୍ତି। ଆଜି ଆମ୍ଭେମାନେ ଚାଷ ଛାଡ଼ିଦେବୁ ତେବେ କ'ଣ ସରକାର ଏମାନଙ୍କୁ ଖାଇବାକୁ ଦେବ ? ଯେଉଁମାନେ ଚାକିରୀ କରିବେ ସେମାନେ ଆଜି ଲୁଣଠାରୁ ପାଣି ପର୍ଯ୍ୟନ୍ତ ସବୁ କିଣୁଛନ୍ତି। ସେଥିପାଇଁ ତାଙ୍କ ହାତରେ ଆଉ କିଛି ରହୁନାହିଁ, ନହେଲେ ସହରର ଲୋକେ ଏତେ ଦୟନୀୟ ଜୀବନ କାହିଁକି ବିତାଉଛନ୍ତି ?

## ମହିଳାମାନଙ୍କ ସ୍ଥିତି

ଖଣି ଓ ପ୍ଲାଣ୍ଟ୍ ହେଲେ ଆଦିବାସୀ ମହିଳାମାନେ ବିଶେଷ ଭାବରେ କ୍ଷତିଗ୍ରସ୍ତ ହେବେ। ସେମାନଙ୍କ ପରିବାରରେ ପୁରୁଷପ୍ରାଧାନ୍ୟ ବଢ଼ିଯିବ ଓ ମହିଳାମାନଙ୍କ ଭୂମିକା ଗୌଣ ହୋଇଯିବ। ଏହାଦ୍ୱାରା ମହିଳାମାନେ ବେଶ୍ ଅସୁରକ୍ଷିତ ହୋଇଯିବେ।

ଆଦିବାସୀ ମହିଳାମାନେ ସର୍ବଦା ସେମାନଙ୍କ ପରିବାର ମଧ୍ୟରେ ସମାନ ଅଧିକାର ପାଇଛନ୍ତି। ସେମାନେ ପୁରୁଷମାନଙ୍କ ସହିତ ମିଶି ଜମିରେ କାମ କରନ୍ତି। ଯେହେତୁ ସେମାନେ ମଧ୍ୟ ପରିବାର ଚଳାଇବାରେ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରନ୍ତି ତେଣୁ ସେମାନଙ୍କର ସ୍ଥାନ ସର୍ବଦା ପୁରୁଷ ସହିତ ସମାନ କରାଯାଇଥାଏ। କାଶୀପୁର ଆଦିବାସୀମାନଙ୍କ ମଧ୍ୟରେ ନାରୀ ପୁରୁଷ ଅନୁପାତ ଜାତୀୟ ସ୍ତରଠାରୁ ବହୁତ ଉନ୍ନତ। ଏଠାରେ କୁହାଯାଇଛି ଯେ, ଯେଉଁ ଅଞ୍ଚଳ ଯେତେ ଉନ୍ନତ ବୋଲି ଦାବୀ କରୁଛି ସେ ଅଞ୍ଚଳରେ ଝିଅ ସଂଖ୍ୟା ପୁଅଙ୍କ ଠାରୁ ଢ଼େର କମ୍। ଏ ଦିଗରେ କାଶୀପୁରରେ ପ୍ରତି ୧୦୦୦ ପୁରୁଷରେ ବାଗ୍ରିଝୋଲା ଗ୍ରାମ (ପ୍ରତି ୧୦୦୦ ପୁରୁଷରେ ୧୧୯୭ ଜଣ ମହିଳା), ଦିମୁଣ୍ଡି ଗ୍ରାମ (୧୦୬୯ ମହିଳା), କରୋଳ (୧୦୭୪ ଜଣ ମହିଳା) ଓ ରାମିନେଢ଼ା (୧୩୧୭ ଜଣ ମହିଳା)।

ଯାହାକି ଜାତୀୟ କ୍ଷେତ୍ରରେ ୨୦୦୧ ଜନଗଣନା ଅନୁସାରେ ମହିଳାଙ୍କ ସଂଖ୍ୟା ପ୍ରତି ୧୦୦୦ ପୁରୁଷରେ ୯୩୩ ଜଣ ଅଟେ। ଶିକ୍ଷିତ ଓ ବିକଶିତ ସମାଜରେ ଝିଅମାନଙ୍କୁ ମା ପେଟରୁ ମାରିଦେବା, ନାରୀ ପ୍ରତି ଯୌନ ଅତ୍ୟାଚାର ଓ ଯୌତୁକ ପାଇଁ ବୋହୂକୁ ମାରିଦେବା ଏବେ ସାଧାରଣ ହେଉଛି।

ଆମ୍ଭେମାନେ ପୁରୁଷଙ୍କ ସହିତ ମିଶି କରି କାମ କରୁ। ପ୍ରତ୍ୟେକ ପରିବାରରେ ଝିଅଠାରୁ ବୁଢ଼ୀ ପର୍ଯ୍ୟନ୍ତ ଆମ୍ଭେମାନେ କାମ କରୁ। ଆମ୍ଭେମାନେ କାମ କରୁ ବୋଲି ଉଭୟ ଘର ଓ ବାହାରେ ଆମ୍ଭେମାନେ ସମ୍ମାନ ଦାବୀ କରିଥାଉ। ଏବଂ ଆମ୍ଭେମାନେ ଗାଁ ମାଟିରେ କିଛି କହିଲେ ଅନ୍ୟମାନେ ତାକୁ ଶୁଣିଥାନ୍ତି ଓ ଆମର କଥାକୁ ପାଳନ କରିନ୍ତି। ଯାହା ପୁରୁଷ କରେ, ଆମ୍ଭେମାନେ ମଧ ସେୟା କରୁ। କମ୍ପାନୀ ଆସିଲେ କ'ଣ ଆମ୍ଭେମାନେ ଏ ପ୍ରକାରର ସମ୍ମାନ ପାଇବୁ? ଆମର ସ୍ୱାଧୀନତା ଚାଲିଯିବ ଆମ୍ଭେମାନେ କେବଳ ଅନ୍ୟର ବାସନ ଧୋଇବା ପାଇଁ ଯୋଗ୍ୟ ହୋଇରହିବୁ। ପୁଣି କମ୍ପାନୀର ଲୋକେ ଆସିଲେ ଆମକୁ ନଦୀ ଘାଟକୁ ଯିବାକୁ ମଧ ଅସମ୍ଭବ ହୋଇଯିବ'

– ମୁକ୍ତା ଝୋଡ଼ିଆ

ଏ କ୍ଷେତ୍ରରେ ନାଲ୍‌କୋର ଦାମନଯୋଡ଼ି ପ୍ଲାଣ୍ଟ୍‌ରେ ବିଧବାମାନଙ୍କ ସ୍ଥିତି ବର୍ଣ୍ଣନାଯୋଗ୍ୟ। ଘରର ପୁରୁଷ ବ୍ୟକ୍ତିକୁ ଚାକିରୀ ମିଳିବା ଦ୍ୱାରା କୌଣସି କାରଣରୁ ତାର ମୃତ୍ୟୁ ହୋଇଗଲେ ସେ ଅଞ୍ଚଳରେ ସେମାନଙ୍କ ବିଧବା ପତ୍ନୀ କେବଳ ଅନ୍ୟଘରେ ବାସନ ମାଜି ଜୀବନ ବିତାଉଛନ୍ତି। (PSSP ଦ୍ୱାରା ୨୦୦୨ରେ ଏକ ସର୍ଭେରୁ ଜଣା ପଡ଼ିଥିଲା ଯେ ନାଲ୍‌କୋର ଦାମନଯୋଡ଼ି ଅଞ୍ଚଳର ସମସ୍ତ ବିସ୍ଥାପିତ ପରିବାରଙ୍କ ମଧ୍ୟରୁ ୬୬ଜଣ ବିଧବା ଏପରି ଅଛନ୍ତି ଯେଉଁମାନେ କଲୋନୀରେ ବାସନ ବାଜି ଓ ଚା' ବିକି ଜୀବନ ବିତାଉଛନ୍ତି। ) ପୁଣି କମ୍ପାନୀ ଆସିଲେ ବାହାରର ଲୋକଙ୍କ ଦ୍ୱାରା ମହିଳାମାନଙ୍କ ଉପରେ ଯେଉଁଭଳି ଯୌନ ଶୋଷଣ, ଅତ୍ୟାଚାର ଓ ବଳାତ୍କାର ଘଟଣାମାନ ଘଟିବ ତାହା ଦୁଃଖଦାୟକ ହେବ। ଏବେବି ଲାଞ୍ଜିଗଡ଼ ଅଞ୍ଚଳରେ ବେଦାନ୍ତ କମ୍ପାନୀ ଜାଗା ଦେଇ ଆଦିବାସୀ ମହିଳାମାନେ ଗଲାବେଳେ ଏହାର ସିକ୍ୟୁରିଟି ଲୋକେ ଚେକିଂ ନାମରେ ମହିଳାମାନଙ୍କ ଲୁଗା ଖୋଲିଦେଉଛନ୍ତି। ଯଦି ମହିଳାମାନେ ବିରୋଧ କରନ୍ତି ତେବେ ସୁପ୍ରିମକୋର୍ଟର ନିର୍ଦ୍ଦେଶ ଅଛି ବୋଲି କମ୍ପାନୀର ଲୋକେ କହୁଛନ୍ତି। ଯେହେତୁ କମ୍ପାନୀ ଆସିଲେ ମହିଳାମାନଙ୍କ ସ୍ଥିତି ବହୁତ ଖରାପ ହେବ ତେଣୁ ଏକଥାକୁ ବୁଝି UAIL ବିରୋଧୀ ସଂଗ୍ରାମରେ ବହୁସଂଖ୍ୟାରେ ମହିଳାମାନେ ଯୋଗ ଦେଉଛନ୍ତି।

## ଆଦିବାସୀ ଗୋଷ୍ଠୀ ଓ ବିକାଶ

କାଶୀପୁରରେ ଶହେ ପ୍ରତିଶତ ଆଲୁମିନା ରପ୍ତାନୀ କରିବାକୁ ଥିବା ଏକ ପ୍ଲାଣ୍ଟ୍ ଓ ତତ୍ ସମ୍ବନ୍ଧୀୟ ଖଣି ଖୋଳି ସରକାର କହୁଛି ଯେ ଏହାଦ୍ୱାରା ଆଦିବାସୀଙ୍କ ବିକାଶ ହେବ।

ଏଥିପାଇଁ ବହୁତ ବେନିୟମ ଭାବରେ ସରକାର ଜମି ଅଧିଗ୍ରହଣ ମଧ୍ୟ କରିଚାଲୁଛି । ମାତ୍ର ପ୍ରକୃତ ହିତାଧିକାରୀ ହେବାକୁ ଥିବା ଏହି ସ୍ଥାନୀୟ ବାସିନ୍ଦା ଯେତେବେଳେ ଉକ୍ତ ବେନିୟମ କାମ ସହିତ ପ୍ରକଳ୍ପର ଆର୍ଥିକ, ପରିବେଶ, ସାମାଜିକ ଓ ଆଇନଗତ ପ୍ରଭାବ ସମ୍ପର୍କରେ ସମୀକ୍ଷା କରୁଛନ୍ତି ସେତେବେଳେ ସରକାର ସେମାନଙ୍କୁ 'ବିକାଶ ବିରୋଧୀ' କହୁଛି ।

ଏ ଟ୍ରିବ୍ୟୁନାଲ ଏକଥା ଜାଣିଲା ଯେ କାଶୀପୁରର ଲୋକେ ବିକାଶ ବିରୋଧୀ ନୁହନ୍ତି । କାରଣ ଓଡ଼ିଶାର ୩୦ଟି ଜିଲ୍ଲା ମଧ୍ୟରୁ ମାନବିକ ବିକାଶ ମାନରେ ରାୟଗଡ଼ା ଜିଲ୍ଲା ୨୫ତମ ସ୍ଥାନ ନେଉଛି ।

ଶିକ୍ଷା, ସ୍ୱାସ୍ଥ୍ୟ ଓ ଅନ୍ୟ ଆବଶ୍ୟକୀୟ ସୁବିଧା କ୍ଷେତ୍ରରେ ସ୍ଥାନୀୟ ଲୋକମାନଙ୍କର ନିଜସ୍ୱ ଏକ ଚିନ୍ତାଧାରା ରହିଛି । ଯେତେବେଳେ ସେମାନଙ୍କୁ ସ୍କୁଲ ଦରକାର ସେମାନଙ୍କୁ ଯୋଗାଇ ଦିଆଯାଉ ନାହିଁ । ସେମାନେ ଏକଥା ବୁଝନ୍ତି ଯେ ବିକାଶର ଅର୍ଥ ନିଜର ସଂସ୍କୃତି, ପରିଚୟ, ପରମ୍ପରା ଓ ଜୀବିକାର ସ୍ଥାୟିତ୍ୱକୁ ନେଇ ବ୍ୟବସ୍ଥା ତିଆରି କରିବା । କିନ୍ତୁ ବହୁ ବୁଦ୍ଧିଜୀବୀ ଓ ରାଜନୈତିକ ଲୋକ ମୁଖ୍ୟଧାରାର ବିକାଶକୁ ଉପଯୁକ୍ତ ବିକାଶ ବୋଲି ଭାବିଥାନ୍ତି । – ପ୍ରଫେସର ଭଗବତ ରଥଙ୍କ ମତରେ 'ରାୟଗଡ଼ା ଜିଲ୍ଲା ଅଣ ଆଦିବାସୀଙ୍କ ଦ୍ୱାରା ଭରପୁର । ସେମାନେ ଆଦିବାସୀଙ୍କୁ ପଛୁଆ ଓ ମୂର୍ଖ ବୋଲି ଭାବନ୍ତି । ଶାସକ ବି.ଜେ.ଡ଼ି. ଦଳର ସ୍ଥାନୀୟ ଜୟରାମ ପାଙ୍ଗି ଯୁକ୍ତି କରନ୍ତି ଯେ 'ଆଦିବାସୀଙ୍କ ବିକାଶ ପାଇଁ ବୃହତ୍ ପ୍ରକଳ୍ପ

| ଓଡ଼ିଶାର ମାନବିକ ବିକାଶ ରିପୋର୍ଟ (୨୦୦୪) | | |
|---|---|---|
| | ରାୟଗଡ଼ା | ଓଡ଼ିଶା |
| ଶିଶୁ ମୃତ୍ୟୁହାର (୧୯୯୯) | ୧୩୧ | ୯୭ |
| ସ୍ୱାସ୍ଥ୍ୟ ସୂଚାଙ୍କ | ୦.୨୫୦ | ୦.୪୬୮ |
| ଶିକ୍ଷାହାର (୨୦୦୧) | ୩୫.୬୧ | ୬୩.୬୧ |
| ଶିକ୍ଷା ସୂଚାଙ୍କ | ୦.୫୩୧ | ୦.୭୨୩ |

ଏକାନ୍ତ ଜରୁରୀ । ନାଲ୍‌କୋର ପ୍ରକଳ୍ପ ନହୋଇଥିଲେ ଦାମନଯୋଡ଼ି ଅଞ୍ଚଳର ଆଦିବାସୀ ଏବେବି ଲୁଗା ପିନ୍ଧିବା ଜାଣିନଥାନ୍ତେ ।' କିନ୍ତୁ ଆମ୍ଭେମାନେ ନାଲ୍‌କୋର ପ୍ରକୃତ ପ୍ରଭାବ ସମ୍ପର୍କରେ କହିସାରିଛୁ ଯେ, ଏହା ପ୍ରକୃତରେ ସ୍ଥାନୀୟ ଲୋକଙ୍କ ପାଇଁ ବିକାଶ ଆଣିବ ନା ବିନାଶ ।

'ଆମର ସମସ୍ୟା ସମ୍ପର୍କରେ କୌଣସି ଉତ୍ତର ନଦେଇ ସେମାନେ ଗୁଳି ଓ ଲାଠି ଦ୍ୱାରା ତା'ର ଜବାବ ଦେଉଛନ୍ତି।' – ଭଗବାନ ମାଝୀ

ଟ୍ରିବ୍ୟୁନାଲ ଦ୍ୱାରା ଏପର୍ଯ୍ୟନ୍ତ ଦେଇଥିବା ସମସ୍ତ ତଥ୍ୟରୁ ଏକଥା ବେଶ୍ ବୁଝାପଡୁଛି ଯେ କାହିଁକି ସ୍ଥାନୀୟ ଲୋକେ ଆଜିପର୍ଯ୍ୟନ୍ତ ଏପରି ଏକ ପ୍ରକଳ୍ପକୁ ବିରୋଧ କରି ଆସୁଛନ୍ତି। ବେନିୟମ ଭାବେ ଜମି ଅଧିଗ୍ରହଣ, ସ୍ୱାସ୍ଥ୍ୟ ଓ ପରିବେଶ ଉପରେ ପ୍ରକଳ୍ପର ଖରାପ ପ୍ରଭାବ, ବିସ୍ଥାପନ, ଉପଯୁକ୍ତ କ୍ଷତିପୂରଣ ଅଭାବ, ଆଦିବାସୀ ଜୀବନ ଜୀବିକା ଓ ସଂସ୍କୃତି ପ୍ରତି ହରାଇବାର ଆଶଙ୍କା ହେତୁ ସ୍ଥାନୀୟ ଲୋକେ ଏପରି ଏକ ପ୍ରକଳ୍ପକୁ ବିରୋଧ କରି ଆସୁଛନ୍ତି। ସ୍ଥାନୀୟ ଲୋକେ ସର୍ବଦା ଅହିଂସାର ରାସ୍ତାରେ ର୍ୟାଲି, ଧାରଣା, ମିଟିଂ ଓ ରାସ୍ତାରୋକ କରି ନିଜର ବିରୋଧ ଦର୍ଶାଇଛନ୍ତି। ସେମାନେ ମଧ୍ୟ ସରକାରଙ୍କ ସହିତ ସର୍ବଦା ନିଜର ଅଧିକାରର ସୁରକ୍ଷା ପାଇଁ ଆଲୋଚନା ପାଇଁ ଆଗ୍ରହ ଦେଖାଇଛନ୍ତି।

ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ କାଶୀପୁର ପରି ଜନ ଆନ୍ଦୋଳନକୁ ଦେଖିଲେ ଜଣାଯାଏ ଯେ ଏପରି ଏକ ପ୍ରକଳ୍ପର ପୁନର୍ବିଚାର କରାଯିବା ଉଚିତ। ମାତ୍ର ସରକାର ଏ ଦିଗରେ କୌଣସି ଆଗ୍ରହ ଦେଖାଇନାହାନ୍ତି। ଓଲଟି ଏପରି ପ୍ରକଳ୍ପର ତଥ୍ୟଗତ କୌଣସି ସ୍ୱଚ୍ଛତା ନଥାଇ ମଧ୍ୟ ଏହାକୁ ଜବରଦସ୍ତି ଲୋକଙ୍କ ମାନିବାକୁ ବାଧ୍ୟ କରିଛନ୍ତି। ଏପରିକି ରାଜ୍ୟ ମଧ୍ୟରେ ଥିବା ମୁଖ୍ୟସ୍ରୋତର ରାଜନୈତିକ ଦଳ ଯଥା ବିଜୁ ଜନତା ଦଳ (ବି.ଜେ.ଡ଼ି), ଭାରତୀୟ ଜନତା ପାର୍ଟି (ବି.ଜେ.ପି) ଓ କଂଗ୍ରେସ ନିଜଭିତରୁ ସମସ୍ତ ବିଦ୍ୱେଷକୁ ଭୁଲି ୧୯୯୯ରୁ UAIL କମ୍ପାନୀ ପାଇଁ ସର୍ବଦଳୀୟ କମିଟି ଗଠନ କରି ଏହି ପ୍ରକଳ୍ପକୁ ସମସ୍ତ ପ୍ରକାରର ସମର୍ଥନ କରି ଆସୁଛନ୍ତି। ସରକାରୀସ୍ତରରେ କୌଣସି ମିଟିଂରେ ଏପରି କୌଣସି ବି ନିର୍ବାଚିତ ପ୍ରତିନିଧି ଲୋକଙ୍କ ସପକ୍ଷରେ କଥା କହିବା ପାଇଁ ଆଗ୍ରହୀ ନୁହନ୍ତି।

୧୯୯୬ରୁ ସରକାର ଗଣତାନ୍ତ୍ରିକ ଉପାୟରେ ସମାଧାନ ଅପେକ୍ଷା ପୋଲିସ ଦ୍ୱାରା ବଳପ୍ରୟୋଗ କରି ସମସ୍ୟାର ସମାଧାନ କରିବା ପାଇଁ ଉଦ୍ୟମ କରିଆସୁଛନ୍ତି। UAIL ସହ ସରକାରୀ ପ୍ରତିନିଧିମାନେ ମିଶି ହିଂସ୍ର ଉପାୟରେ ଏହାକୁ ଦମନ କରିବାକୁ ସମସ୍ତ ଉଦ୍ୟମ ଜାରି ରଖିଛନ୍ତି। ସରକାର ଯେଉଁଭଳି ଜମି ଅଧିଗ୍ରହଣ ଓ ଅଇଥାନ ନୀତିକୁ ସ୍ଥାନୀୟ ଲୋକଙ୍କ ନିକଟରେ ଜୋର ଜବରଦସ୍ତି ଗୃହୀତ କରାଇଛନ୍ତି ଏହା କେବଳ ଧର୍ମକୁ ଆଖିଠାର ଭଳି ହୋଇଛି।

UAIL ସପକ୍ଷରେ ମାଇକଞ୍ଚ ଗୁଳିକାଣ୍ଡ ପରେ ଡିସେମ୍ବର ୨୦୦୪ରୁ ଯେଉଁଭଳି ପୋଲିସ ଶକ୍ତିର ବ୍ୟବହାର କରାଯାଇଛି ସେଥିରୁ ଜଣାପଡ଼େ ଯେ ଲୋକଙ୍କ ବିରୋଧ କେତେ ଶକ୍ତିଶାଳୀ ଥିଲା। ଧାର୍ଯ୍ୟ ପୋଲିସ ଶକ୍ତିର ବ୍ୟବହାର ଆଗରୁ ବିଭିନ୍ନ ସମୟରେ ସରକାରୀ

ଲୋକଙ୍କ ବକ୍ତବ୍ୟ ବେଶ୍ ଗୁରୁତ୍ୱପୂର୍ଣ୍ଣ। ସେଥିମଧ୍ୟରୁ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ କହିଛନ୍ତି, 'ଶିଳ୍ପର ବିକାଶ ଦିଗରେ କୌଣସି ବି ବାଧାବିଘ୍ନକୁ ବରଦାସ୍ତ କରାଯିବ ନାହିଁ। ବିଜେପିର କ୍ୟାବିନେଟ୍ ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନ କହିଛନ୍ତି, 'ଖଣିକୁ ବିରୋଧ କରୁଥିବା ଲୋକେ ସମସ୍ତେ ସମାଜବିରୋଧୀ ଅଟନ୍ତି।' ରାୟଗଡ଼ା ଜିଲ୍ଲାପାଳ ପ୍ରମୋଦ କୁମାର ମେହର୍ଦ୍ଦା କହିଛନ୍ତି, 'ପ୍ରକଳ୍ପକୁ ବିରାଧ କରୁଥିବା ଲୋକେ ସମାଜ ବିରୋଧୀ, ଦେଶ ବିରୋଧୀ, ବିକାଶ ବିରୋଧୀ ଓ ଉଗ୍ରପନ୍ଥୀ ଅଟନ୍ତି।'

ସରକାରୀ ସ୍ତରରେ UAIL ବିଚାର ସଙ୍ଗଠନ PSSPର ମୁଖ୍ୟ କର୍ମକର୍ତ୍ତା ଲକ୍ଷ୍ୟ (ଟାର୍ଗେଟ) କରାଯାଇଥିଲା। ଯେଉଁଥିରୁ କି ସ୍ତ୍ରୀ ଓ ପିଲାମାନେ ମଧ୍ୟ ବାଦ୍ ପଡ଼ିନଥିଲେ। ଡିସେମ୍ବର ୧, ୨୦୦୪ରୁ ଯେବେ ପ୍ରକଳ୍ପର ମୂଳଦୁଆ ପଡ଼ିଲା ସେବେଠାରୁ ପୁଣିଥରେ ଆମ ଉପରେ ଦମନ ଆରମ୍ଭ ହେଲା। ଆମକୁ ସବୁଦିନ ପାଇଁ ନୀରବ କରିଦେବା ପାଇଁ ସମସ୍ତ ପ୍ରକାରର ଅସାମ୍ବିଧାନିକ ପ୍ରକ୍ରିୟା ନେଇ ସରକାର, ପୋଲିସ ଓ କମ୍ପାନୀ ଗୁଣ୍ଡାଦ୍ୱାରା ଆମକୁ ଦମନ କରାଯାଇ ଆସୁଛି।'

- ଶଙ୍କର ପ୍ରସାଦ ମୁଦୁଲି

ପୋଲିସ, ଅର୍ଦ୍ଧସାମରିକ ବାହିନୀ ଓ କମ୍ପାନୀର ଗୁଣ୍ଡାମାନେ ସମସ୍ତେ କମ୍ପାନୀ ସହିତ ମିଶି ସଙ୍ଗଠନର ସଭାକୁ ଭଣ୍ଡୁର କରିବା, ଆରେଷ୍ଟ କରିବା, ଗାଁକୁ ଗାଁ ଚଢ଼ଉ କରିବା ଦ୍ୱାରା କାଶୀପୁର ଅଞ୍ଚଳରେ କୋକୁଆଭୟ ସୃଷ୍ଟି ହୋଇଯାଇଥିଲା। ପୋଲିସ ତରଫରୁ ଗୁଳିଚାଳନା କରିବା, ଲୁହବୁହା ଗ୍ୟାସ ପ୍ରୟୋଗ କରିବା, ଲାଠିଚାର୍ଜ କରିବା, ଧମକ ଦେବା ପରି କାମ କରାଯାଇଛି। ଏହାପରେ ବି ଲୋକେ ଲଢ଼େଇ କରୁଛନ୍ତି ଓ ଟ୍ରିବ୍ୟୁନାଲ ସମ୍ମୁଖରେ ସାକ୍ଷ୍ୟ ଦେଇଥିବା ପ୍ରତ୍ୟେକ ବ୍ୟକ୍ତି ସେମାନଙ୍କ ବକ୍ତବ୍ୟ ପଛରେ ଥିବା ସେମାନଙ୍କ ଅସୀମ ସାହସ ଓ ଦୃଢ଼ୋକ୍ତି ଦେଖାଇଛନ୍ତି। ୨୦୦୫ ମସିହା ମଧ୍ୟରେ କାଶୀପୁର ଅଞ୍ଚଳ ଗସ୍ତ କରିଥିବା ବିଭିନ୍ନ ମାନବିକ ଅଧିକାର ସଙ୍ଗଠନ ଯଥା - ପି.ୟୁ.ସି.ଏଲ୍, ପି.ୟୁ.ଡି.ଆର୍, ଏ.ପି.ଡ଼ି.ଆର୍, ଏଚ୍.ଆଇ.ଏଫ୍ ଓ ଇନ୍‌ସାଫର ରିପୋର୍ଟକୁ ଏ ସମ୍ପର୍କରେ ବିସ୍ତୃତ ଆଲୋଚନା ହୋଇସାରିଛି।

## ପୋଲିସ ଓ ଅର୍ଦ୍ଧସାମରିକ ବାହିନୀର ପ୍ରବେଶ

କାଶୀପୁର ଅଞ୍ଚଳରେ ହଠାତ୍ ଡିସେମ୍ବର ୨୦୦୪ ପରେ ପୋଲିସ ପ୍ଲାଟୁନ୍‌ର ସଂଖ୍ୟା ହଠାତ୍ ବଢ଼ାଇ ଦିଆଗଲା। ଏହା ପରେ ଡିସେମ୍ବର ୫, ୨୦୦୪ରେ କେନ୍ଦ୍ରୀୟ ରିଜର୍ଭ ବାହିନୀ (ସି.ଆର୍.ପି.ଏଫ୍) ଓ ଭାରତୀୟ ରିଜର୍ଭ ବାହିନୀ (ଆଇ.ଆର୍.ବି)କୁ ମୁତୟନ କରାଗଲା। ଏହା ପରେ ପରେ ମୁଖ୍ୟତଃ ଦୁଇଟି ପୋଲିସ ବାରାକ୍ ଓ ଫାଣ୍ଡି ମଧ୍ୟ ପ୍ରତିଷ୍ଠା କରାଗଲା।

UAILକୁ ବିରୋଧ କରି ଗଢ଼ି ଉଠୁଥିବା ଆନ୍ଦୋଳନକୁ ନୀରବ କରିବା ପାଇଁ ଏପରି

ଦମନ ଆରମ୍ଭ କରାଯାଇଥିଲା । ପ୍ରକଳ୍ପକୁ ବିରୋଧ କରୁଥିବା ଲୋକଙ୍କ ଘର ଉପରେ ଚଢ଼ଉ କରି ଗିରଫ କରିବା ଓ କମ୍ପାନୀ ଗୁଣ୍ଡାମାନଙ୍କୁ ନିର୍ଭୟରେ କମ୍ପାନୀ ବିରୋଧୀମାନଙ୍କୁ ଆକ୍ରମଣ କରାଇବା- ଏହି ଦୁଇ କାମ ଏହି ସଶସ୍ତ୍ରବାହିନୀ ଦ୍ୱାରା କରାଯାଇଥିଲା । କମ୍ପାନୀର ଅଫିସ୍‌ରେ ଏମାନଙ୍କୁ ସ୍ଥାନ ଓ ଖାଦ୍ୟ ମଧ୍ୟ ମୁକ୍ତ ଭାବରେ ଯୋଗାଯାଉଥିବା କଥା କମ୍ପାନୀ ସୂତ୍ରରୁ ଜଣାପଡ଼ିଲା । କମ୍ପାନୀ ବିରୋଧୀମାନଙ୍କ ମୁଖ୍ୟ ସ୍ଥାନ ହୋଇଥିବା କୁଚେଇପଦର ଗ୍ରାମ ନିକଟରେ ପୁଣି ଏକ ଫାଣ୍ଡି ଓ ପୋଲିସ୍ ବାରାକ୍ ପ୍ରତିଷ୍ଠା କରିବା ସରକାରଙ୍କ ଉଦ୍ଦେଶ୍ୟ ଥିଲା । କୁଚେଇପଦର ନିକଟରୁ ୧୦କି.ମି.ଦୂରରେ ଟିକିରି ଥାନା ୫କି.ମି. ଦୂରରେ ଡଙ୍ଗାସିଲ ଫାଣ୍ଡି ଥାଇ ମଧ୍ୟ ପୁଣି ଏକ ଫାଣ୍ଡି ଓ ବାରାକ୍ ଅନାବଶ୍ୟକ । ତେଣୁ ଏଥିରୁ ଜଣାପଡୁଛି ଯେ ସରକାର କେଉଁଭଳି କମ୍ପାନୀବିରୋଧୀ ସ୍ୱରକୁ ଦବାଇ ଦେବା ପାଇଁ ଚେଷ୍ଟା କରୁଥିଲେ ।

ଟ୍ରିବ୍ୟୁନାଲ ଉକ୍ତ ଅଞ୍ଚଳକୁ ଗସ୍ତ କରିବା ସମୟରେ ମଧ୍ୟ ଏହି ସଶସ୍ତ୍ର ବାହିନୀକୁ ଦେଖିଥିଲେ । PUDR ମଧ୍ୟ ନିଜ ଗସ୍ତସମୟରେ ଏତେସଂଖ୍ୟକ ପୋଲିସର ବନ୍ଧୁକ ଏକକାଳୀନ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । PUCL ମଧ୍ୟ ନିଜ ଗସ୍ତ ସମୟରେ ଅନୁଭବ କରିଛି ଯେ କାଶୀପୁରକୁ ସମ୍ପୂର୍ଣ୍ଣ ଭାବରେ ନାକାବନ୍ଦୀ କରି ରଖାଯାଇଛି ଓ ଭୟର ବାତାବରଣ ସୃଷ୍ଟି କରାଯାଇଛି । ସଶସ୍ତ୍ର ବାହିନୀ ଗାଁକୁ ଗାଁ ମାର୍ଚ୍ଚପାଷ୍ଟ କରୁଛନ୍ତି ଯାହାଦ୍ୱାରା କି ସ୍ଥାନୀୟ ଲୋକେ ନିଜ ଜମିକୁ ଯିବା ମଧ୍ୟ ବନ୍ଦ କରିଦେଇଛନ୍ତି । ବହୁତ୍ ସ୍ଥାନରେ ସ୍ଥାନୀୟ ଗ୍ରାମବାସୀ ପୋଲିସ ଦ୍ୱାରା ଅତ୍ୟାଚାରିତ ହେବା, ମାଡ଼ ଖାଇବା ପରି ଘଟଣାମାନ ଘଟୁଛି ।

## ଗାଁରେ ରେଡ୍

ପୋଲିସ ସଶସ୍ତ୍ର ବାହିନୀ ନିୟମିତ ଭାବରେ ଗାଁରେ ମାର୍ଚ୍ଚପାଷ୍ଟ କରୁଛି । ଶଙ୍କର ମୁଦୁଲିଙ୍କ ବୟାନ ଅନୁସାରେ ଡିସେମ୍ବର ୫, ୨୦୦୧ରେ ପ୍ରାୟ ୧୦୦ ଜଣ ସିଆରପିଏଫ୍ ତାଙ୍କର ବାଗ୍ରିଝୋଲା ଗାଁକୁ ଚାରିପଟରୁ ଘେରିଗଲେ । ଟିକିରି ଥାନା ଅଧିକାରୀ କିଶୋର ମୁଣ୍ଡାଙ୍କ ନେତୃତ୍ୱରେ ଆସିଥିବା ଏହି ସଶସ୍ତ୍ର ବାହିନୀ ଧମକ ଦେଲେ 'କମ୍ପାନୀକୁ ବିରୋଧ କଲେ ୧୦୦ ଜଣ ଲୋକଙ୍କ ପ୍ରାଣ ନେବୁ । ତୁମେମାନେ କିଛିବି ପାଇବ ନାହିଁ ।' ଏହାପରେ ୩-୪ ଦିନ ପର୍ଯ୍ୟନ୍ତ ଲୋକେ ଗାଁକୁ ଡରିକରି ଆସିଲେ ନାହିଁ ।

ଡିସେମ୍ବର ୧୦, ୨୦୦୪ରେ ପୁଣି ୮୫ଜଣ ସିଆରପିଏଫ୍ ଜବାନ୍ ଗାଁକୁ ଆସି ଧମକ ଦେଲେ ଯେ ପ୍ରକଳ୍ପକୁ ବିରୋଧ କଲେ ମହିଳାମାନଙ୍କୁ ମଧ୍ୟ ଗିରଫ କରାଯିବ । ପୁଣି ଡିସେମ୍ବର ୧୩, ୨୦୦୪ରେ ସହିଦ ଦିବସ (ମାଇକଞ୍ଚ ଗୁଳିକାଣ୍ଡର ସହିଦ ଦିବସ ଡିସେମ୍ବର ୧୬ ତାରିଖ ଦିନ ପ୍ରତିବର୍ଷ ପାଳନ କରାଯାଏ) ପାଳନ କରିବାକୁ ଧମକ ଦେଲେ । (ଏହାପରେ ବି ସହିଦ ଦିବସ ବାଗ୍ରିଝୋଲାଠାରେ ପାଳନ କରାଗଲା ଓ ହଜାରେ ପାଖାପାଖି ଲୋକେ ଓ ବିଭିନ୍ନ ସଙ୍ଗଠନର ସାଥୀ ଏଥିରେ ଯୋଗ ଦେଇଥିଲେ)

ପୁଣି ପାଞ୍ଚ ମାସ ପରେ ମେ ୧୦, ୨୦୦୫ରେ ୧୦୦ ସି.ଆର୍.ପି.ଏଫ୍ ସଶସ୍ତ୍ର ପୋଲିସ

ରାତି ୧ଟା ସମୟରେ କିଶୋର ମୁଣ୍ଡାଙ୍କ ସହିତ ବାଘ୍ରିଝୋଲା ଗ୍ରାମକୁ ଘେରାଉ କଲେ। ସେମାନେ ଶଙ୍କର ମୁଦୁଲିଙ୍କ ଘରକୁ ଆକ୍ରମଣ କରି ଦୁଆର ଭାଙ୍ଗି ଘରେ ଶଙ୍କରଙ୍କୁ ଖୋଜିଲେ। ନପାଇବା ହେତୁ ତାଙ୍କର ମାଁଙ୍କୁ ମାଡ଼ମାରି ଚାଲିଗଲେ। ଏହା ପରେ ନାଥ ଜାନିଙ୍କ ଘର ଚଢ଼ଉ କରି କାନ୍ଥ ଓ ଦୁଆର ଭାଙ୍ଗିଦେଲେ। ସେଠାରେ ମଧ୍ୟ ନାଥକୁ ନ ପାଇ ଧମକ ଦେଇ ଚାଲିଗଲେ।

ସେହିପରି ପୁଣି ମେ ୧୩, ୨୦୦୫ରେ ପୁଣିଥରେ ବାଘ୍ରିଝୋଲା ଗାଁକୁ ଆସି ଧମକ ଦେଲେ। ଏହିଭଳି ପ୍ଲାଣ୍ଟ୍ ଅଞ୍ଚଳରେ ସମସ୍ତ ଗାଁ(କୁଚେଇପଦରକୁ ଛାଡ଼ି)ରେ ପୋଲିସ ଗ୍ରାମ ମଧ୍ୟରେ ପଶି ଚଢ଼ଉ କରିବା, ଦୁଆର ଭାଙ୍ଗିବା, ଘୋଷାରି ନେବା, ଧମକ ଦେବା, ମାଡ଼ମାରିବା ପରି କାମ ମାନ କରିଚାଲିଥିଲେ। ମାଇକଞ୍ଚ ଗ୍ରାମରେ ପଞ୍ଚାୟତ ଅଫିସରେ ଏକ ସଶସ୍ତ୍ର ବାହିନୀ ଦୁଇମାସ ପର୍ଯ୍ୟନ୍ତ କ୍ୟାମ୍ପ କରି ମାଇକଞ୍ଚ ଓ ଆଖପାଖ ଅଞ୍ଚଳରେ ଲୋକଙ୍କ ଶାନ୍ତ ଜୀବନକୁ ଛିନ୍ନଭିନ୍ନ କରିଦେଇଥିଲେ। ଏପରିକି ୭୦ବର୍ଷର ଜଣେ ମହିଳା ଗାଁ ଛାଡ଼ି ୩-୪ ଦିନ ଜଙ୍ଗଲରେ ରହିଯାଇଥିଲା। ଅବଶ୍ୟ ଏପରି ଦମନ ଦ୍ୱାରା PSSPର କିଛି ନେତୃବୃନ୍ଦ କମ୍ପାନୀକୁ ବିରୋଧ କରିବା ବନ୍ଦକରି ପୋଲିସ ପାଖରେ ଆତ୍ମସମର୍ପଣ କରିଥିଲେ।

## ଲୋକଙ୍କ ସାମ୍ବିଧାନିକ ଅଧିକାରକୁ ଉଲ୍ଲଂଘନ

ଭାରତୀୟ ସମ୍ବିଧାନର ନିୟମ ୧୯ରେ ଉଲ୍ଲେଖ ଅଛି ଯେ ଏ ଦେଶର ନାଗରିକମାନେ ଶାନ୍ତିପୂର୍ଣ୍ଣ ଭାବରେ ମିଳିତ ହୋଇପାରିବେ ଓ ନିଜର ବକ୍ତବ୍ୟ ମଧ୍ୟ ସ୍ୱାଧୀନଭାବେ ରଖିପାରିବେ। ମାତ୍ର UAIL ଆସିବା ଦିନଠାରୁ କାଶୀପୁର ଅଞ୍ଚଳରେ ଏହାର ଉଲ୍ଲଂଘନ ହୋଇଚାଲିଛି। ଏପରିକି ପୋଲିସର ଅନୁମତି ନେଇ ସଭାସମିତି କଲେ ମଧ୍ୟ ପୋଲିସ ଓ ଗୁଣ୍ଡାଙ୍କ ଦମନର ଶିକାର ହେଉଛନ୍ତି।

ଜାନୁଆରୀ ୫, ୧୯୯୮ରେ କୁଚେଇପଦରଠାରେ UAILର ଗାଡ଼ିକୁ ବନ୍ଦ କରିବା ପାଇଁ ଯେଉଁ ଗେଟ୍ କରାଯାଇଥିଲା ସେଠାରେ ପୋଲିସ ଆସି ଲାଠିଚାର୍ଜ କଲା ଓ ଲୁହବୁହା ଗ୍ୟାସ ଛାଡ଼ିଲା। ଏଥିରେ ୫୦ଜଣ ଲୋକ ଆଘାତ ପାଇଲେ।

୨୯ମାର୍ଚ୍ଚ ୧୯୯୮ରେ ଲକ୍ଷ୍ମଣ ନାୟକ ସହିଦ ଦିବସ ପାଳନ ଅବସରରେ କାଶୀପୁର ଠାରେ ଲୋକେ ଏକାଠି ହେବା ଆଗରୁ କମ୍ପାନୀର ଗୁଣ୍ଡାମାନେ ଲୋକଙ୍କୁ ଆକ୍ରମଣ କଲେ। ଏଥିରେ ପୋଲିସ ନୀରବ ରହିଲା। ଏହିଦିନ ଶ୍ରୀ ପ୍ରଫୁଲ୍ଲ ସାମନ୍ତରା ଓ ଶ୍ରୀ ଲିଙ୍ଗରାଜ ମଧ୍ୟ କମ୍ପାନୀଗୁଣ୍ଡାଙ୍କ ଆକ୍ରମଣର ଶିକାର ହେଲେ। ଏହା ବ୍ୟତୀତ ଆଉ ଦୁଇଜଣ ସାଥି ସନାତନ ପ୍ରଧାନ ଓ ରବି ମିଶ୍ରଙ୍କୁ ଗୁଣ୍ଡାମାନେ ହରଣଚାଳ କରିନେଇ ମୁଣ୍ଡ ଲଣ୍ଡା କରି ମୁହଁରେ ଚୁନକାଳୀ ଦେଇ ଦୁଇଦିନ ପରେ ଛାଡ଼ିଲେ। ଏ କ୍ଷେତ୍ରରେ ପୋଲିସକୁ ଏତଲା ଦିଆଯାଇଥିଲେ ମଧ୍ୟ କୌଣସି କାର୍ଯ୍ୟାନୁଷ୍ଠାନ ନିଆଯାଇ ନାହିଁ।

ଡିସେମ୍ବର ୧୬, ୨୦୦୦ରେ UAILକୁ ବିରୋଧ କରୁଥିବା ହେତୁ ପୋଲିସ ଗୁଳିରେ ତିନିଜଣ ଆଦିବାସୀ (ଅଭିଳାଷ ଝାଡ଼ିଆ, ରଘୁନାଥ ଝୋଡ଼ିଆ ଓ ଦାମୋଦର ଝୋଡ଼ିଆ) ସହିଦ ହୋଇଗଲେ। ସରକାରଙ୍କ ତରଫରୁ ଗଠିତ ପି.କେ.ମିଶ୍ର କମିଶନ ଏହି ଗୁଳିକାଣ୍ଡ ପାଇଁ ପୋଲିସକୁ ସମ୍ପୂର୍ଣ୍ଣ ରୂପେ ଦାୟୀ କରିଛନ୍ତି। ମାତ୍ର ସେମାନଙ୍କ ବିଷୟରେ ଏବେବି କୌଣସି କାର୍ଯ୍ୟାନୁଷ୍ଠାନ ନିଆଯାଇ ନାହିଁ। ଏପରିକି ଏହାର ଚତୁର୍ଥ ସହିଦ ଦିବସ (ଡିସେମ୍ବର ୧୬, ୨୦୦୪) ବାଘ୍ରିଝୋଲା ଠାରେ ଏହାର ପାଳନ ଅବସରରେ ଦୁଇଜଣ ବିଧାୟକ ସମେତ ବହୁ ଜନସଙ୍ଗଠନର ସାଥୀଙ୍କୁ ଟିକିରିଠାରେ କମ୍ପାନୀର ଗୁଣ୍ଡାମାନେ ରୋକି ପୋଲିସ ସମ୍ମୁଖରେ ଆକ୍ରମଣ କରିଥିଲେ। ଏ ସମ୍ପର୍କରେ ଏତଲା ଦିଆଯାଇଥିଲେ ମଧ୍ୟ କୌଣସି କାର୍ଯ୍ୟାନୁଷ୍ଠାନ ନିଆଯାଇନାହିଁ। ଏହି ସହିଦ ଦିବସ ପାଳନ ପୂର୍ବରୁ ଲୋକଙ୍କୁ ଭୟଭୀତ କରିବା ପାଇଁ ବାଘ୍ରିଝୋଲା ସମେତ ସମସ୍ତ ଗ୍ରାମରେ ସି.ଆର୍.ପି.ଏଫ୍ ତରଫରୁ ଫ୍ଲାଗମାର୍ଚ୍ଚ କରାଯାଇଥିଲା।

ପ୍ରକୃତରେ ଡିସେମ୍ବର ୧, ୨୦୦୪ରେ କୁଚେଇପଦର ନିକଟସ୍ଥ ଡି କରୋଳଠାରେ ଏକ ପୋଲିସ ବାରାକ ଓ ଫାଣ୍ଡି ପ୍ରତିଷ୍ଠା ପାଇଁ ଉଦ୍ୟମ କରାଗଲା। ଏହାକୁ ବିରୋଧ କରି ସ୍ଥାନୀୟ ଲୋକେ ରାସ୍ତାରେ ସେହିଦିନ ବସିରହିଲେ। ସମ୍ମୁଖ ଜାଗାରେ ମହିଳାମାନେ ଥିଲେ। ପୋଲିସ ସେମାନଙ୍କୁ ରେପ୍‌ର ଧମକ ଦେଲା। ଏହାପରେ ନଉଠିବା ହେତୁ ଫାଙ୍କା ଗୁଳିକରି ଲୋକଙ୍କୁ ଭୟଭୀତ କରାଇ ପଛରୁ ଲାଠିଚାର୍ଜ ଓ ଲୁହବୁହା ଗ୍ୟାସ ଛଡ଼ାଗଲା।

'ଡିସେମ୍ବର ୧, ୨୦୦୪ରେ ପୋଲିସ ଫାଣ୍ଡି ପ୍ରତିଷ୍ଠାକୁ ଆମ୍ଭେମାନେ ବିରୋଧ କଲୁ। ଉଭୟ ଟିକିରି ଓ ଡ଼ଙ୍ଗରିଲାଠାରେ ଯଥାକ୍ରମେ ଥାନା ଓ ଫାଣ୍ଡି ଥିବା ହେତୁ ଏପରି ଫାଣ୍ଡିର ଆବଶ୍ୟକତା ନାହିଁ ବୋଲି ଆମ୍ଭେମାନେ ଉପସ୍ଥିତ ଜିଲ୍ଲାପାଳଙ୍କ ସହିତ ଯୁକ୍ତି କଲୁ। ଆମ୍ଭେମାନେ ପ୍ରଶ୍ନ କଲୁ ଆମକୁ ଡାକ୍ତରଖାନା ଓ ସ୍କୁଲ ଯୋଗାଇ ନଦେଇ ଫାଣ୍ଡି କାହିଁକି କରାଯାଉଛି। ଆମ୍ଭର ଏପରି ଉପସ୍ଥିତିକୁ ପୋଲିସ ତରଫରୁ ବେନିୟମ ଘୋଷଣା କରାଗଲା, ଆମର ମହିଳାମାନଙ୍କୁ ରେପ୍ କରିବାର ଧମକ ଦିଆଗଲା। ଏହାପରେ ଫାଙ୍କା ଗୁଳିଚାଳନା ଓ ପରେ ପରେ ଲାଠିଚାର୍ଜ କରାଗଲା। ଏହି ଲାଠିଚାର୍ଜରେ ଆହତ ଦୁଇଜଣ ମହିଳା ଓ ଚାରିଜଣ ପୁରୁଷ ଲୋକଙ୍କୁ ପୋଲିସ ଉଠାଇନେଇ ଜେଲ୍‌ରେ ପୁରାଇଦେଲା।'

-ଭଗବାନ ମାଝୀ

ଏହି ଦିନର ଘଟଣାକୁ ବର୍ଣ୍ଣନା କରିବାକୁ ଯାଇ କୁଚେଇପଦର ଗ୍ରାମର ମହିଳା ମାକାରୀ ମାଝୀ (୫୦ବର୍ଷ) କୁହନ୍ତି, 'ଏହିଦିନ ମୋତେ ମଧ୍ୟ ଲାଠିଚାର୍ଜ କରାଗଲା, ଏହାପରେ ସେମାନେ ଟିକିରି ଥାନାକୁ ନେଇ ସେଠାରେ ମଧ୍ୟ ବୁଟ୍ ଓ ଚପଲରେ ମୋତେ ମାରିଲେ। ଏହାପରେ ମୋତେ ଜେଲ ପଠାଇଦେଲେ। ଜେଲରେ ପ୍ରଥମ ୧୫ଦିନ ପର୍ଯ୍ୟନ୍ତ ମୋର କାନ୍ଦି କାନ୍ଦି କଟିଲା। ଜେଲରେ ଚାରିମାସ ରହିଲା ପରେ ଏବେ ବେଲ୍‌ରେ ଆସିଛି।'

୨୫ମେ ୨୦୦୫ରେ PSSP ତରଫରୁ ଏକ ର୍ୟାଲି ପୋଲିସ ଦମନ ବିରୁଦ୍ଧରେ ଟିକିରି ଠାରେ କରାଯାଇଥିଲା। ଏହି ର୍ୟାଲିକୁ ନଆସିବା ପାଇଁ ସଶସ୍ତ୍ର ବାହିନୀ ଗାଁ କୁ ଗାଁ ବୁଲି ଧମକ ଦେଇଥିଲେ ମଧ୍ୟ ଶହ ଶହ ଲୋକ ର୍ୟାଲିରେ ଯୋଗ ଦେଇଥିଲେ।

୧୫ ଜୁନ୍ ୨୦୦୫ରେ ଗୁରୁପୁଟଠାରେ ୫୦୦ ଲୋକ ବସି UAIL ପ୍ରକଳ୍ପ ସମ୍ପର୍କରେ ଆଗାମୀ କାର୍ଯ୍ୟକ୍ରମ ସମ୍ପର୍କରେ ବିଚାର ଆଲୋଚନା କରୁଥିବା ସମୟରେ ୧୦୦ଜଣ ସଶସ୍ତ୍ର ପୋଲିସ ମଦ ପିଇ ସେ ଜାଗାରେ ପହଞ୍ଚିଗଲେ ଓ ଲାଠିଚାର୍ଜ ଆରମ୍ଭ କଲେ।

'ଜୁନ୍ ୧୫, ୨୦୦୫ରେ ଆମ୍ଭମାନଙ୍କର କମିଟି ମିଟିଂ ଚାଲିଥାଏ। ଆମ୍ଭେ ମହିଳାମାନେ ବହୁସଂଖ୍ୟାରେ ଏକାଠି ହୋଇ ଆମର ଜମି ଓ ଭିଟାମାଟି ସମ୍ପର୍କରେ ଆଲୋଚନା କରୁଥିଲୁ। ମିଟିଂ ପ୍ରାୟ ସରିବା ବେଳକୁ ପୋଲିସ ଆସି ପହଞ୍ଚିଲା। କିଶୋର ମୁଣ୍ଡାଙ୍କ ନେତୃତ୍ୱରେ ସଶସ୍ତ୍ର ପୋଲିସ ଆସିଥିଲେ। ସେମାନେ ସମସ୍ତେ ମଦ ପିଇଥିଲେ। ସେମାନଙ୍କ ଆଖି ନାଲି ହୋଇଥିଲା। ସେମାନେ ଆମକୁ କିଛି ପଚାରିଲେ ନାହିଁ କି କିଛି କଥା ହେଲେ ନାହିଁ। ପୋଲିସର ବିନା ଅନୁମତିରେ କିପରି ମିଟିଂ କରୁଛ ବୋଲି ସେମାନେ ଆମ ଉପରେ ଲାଠିଚାର୍ଜ ଆରମ୍ଭ କରିଦେଲେ। ପ୍ରଥମେ ସେମାନେ ଉପରକୁ ଗୁଳି କଲେ। ଆମ୍ଭେମାନେ ଡରିଗଲୁ, ତା'ପରେ ସେମାନ ଆମକୁ ଲାଠିରେ ମାରିବା ଆରମ୍ଭ କଲେ। ବହୁ ସ୍ତ୍ରୀଲୋକ ବେହୋସ ହୋଇଗଲେ। କମ୍ପାନୀ ଆସିବା ଆଗରୁ ଯଦି ସେମାନେ ଏପରି କଲେଣି ତେବେ ଆଗକୁ ସେମାନେ କ'ଣ ନକରିବେ?'

- ମୁକ୍ତା ଝୋଡ଼ିଆ

ଏ ସମ୍ପର୍କରେ ପ୍ରଦୀପ ମାଝୀ (ବୟସ ୧୫ବର୍ଷ)ର କହିବା ହେଲା - 'ମୁଁ ଗୁରୁପୁଟ ଠାରେ ଜୁନ୍ ୧୫, ୨୦୦୫ରେ ହେଉଥିବା ମିଟିଂରେ ଉପସ୍ଥିତ ଥିଲି। ଆମ୍ଭେମାନେ ପ୍ରାୟ ୫୦୦ ଲୋକ ଥିଲୁ। ଟିକିରି ଥାନା ଅଫିସର କିଶୋର ମୁଣ୍ଡାଙ୍କ ନେତୃତ୍ୱରେ ପ୍ରାୟ ୧୦୦ ସଶସ୍ତ୍ର ପୋଲିସ ହଠାତ୍ ସନ୍ଧ୍ୟା ସମୟରେ ପହଞ୍ଚିଗଲେ, ଆମକୁ ଲାଠିଚାର୍ଜ କଲେ ଓ କେତେ ଲୋକଙ୍କୁ ଆରେଷ୍ଟ କରିନେଲେ। ଏହାପରେ ମୁଁ ଓ ମୋର ସାଥିମାନେ ପାଖ ବିଲମାଳ ଗାଁକୁ ୨୫ଜୁନ୍ ୨୦୦୫ରେ ବାହାଘର ଭୋଜି ଖାଇ ଯାଇଥିଲୁ। ରାତିରେ ଆମ୍ଭେମାନେ ଗାଁକୁ ଫେରୁଥିଲୁ, ରାସ୍ତାରେ କିଶୋର ମୁଣ୍ଡା କିଛି ସଶସ୍ତ୍ର ପୋଲିସ ସହିତ ଆମକୁ ଅଟକାଇଲା। ସେଠାରେ ଆମକୁ ଆରେଷ୍ଟ କରି ଟିକିରି ଆଣିଲେ। ଆଉଜଣେ ଅଫିସର ମୋତେ ବୁଟରେ ମାରିଲେ। ମୋର ସାଥୀ ସନ୍ତୋଷ ମାଝିକୁ ଓ ବୀର ମାଝିକୁ ମଧ୍ୟ କିଶୋର ମୁଣ୍ଡା ଗୋଇଠା ମାରିଲା। ଆମ୍ଭେମାନେ କାହିଁକି ଗୁରୁପୁଟ ମିଟିଂ ଯାଇଥିଲୁ ବୋଲି ପୋଲିସ ଆମକୁ ଧମକାଇଲା। ଏହା ପରେ ମୋର ସମସ୍ତ ସାଥୀଙ୍କୁ ରାୟଗଡ଼ା ଜେଲ୍ ଓ ମୁଁ ପିଲା ହେତୁ ମୋତେ ବ୍ରହ୍ମପୁର ପଠାଗଲା।' ପ୍ରଦୀପ ମାଝି ନିଜର ଲିଖିତ ବକ୍ତବ୍ୟ ଟ୍ରିବ୍ୟୁନାଲ ଆଗରେ ରଖିବା ଆଗରୁ କାନ୍ଦି ପକାଇଲା। ଫଳରେ ଆଉଜଣେ ସାଥି ତାଙ୍କର ଲିଖିତ ବକ୍ତବ୍ୟ ଟ୍ରିବ୍ୟୁନାଲକୁ ଶୁଣାଇଲେ।

## ମନମୁଖୀ ଆରେଷ୍ଟ

UAIL କମ୍ପାନୀକୁ ବିରୋଧ କରୁଥିବା ହେତୁ ସଙ୍ଗଠନର ମୁଖ୍ୟ କର୍ମୀ, ଗାଁର ମୁଖିଆ, ଏହାର ନେତୃବର୍ଗ ଏପରିକି ମହିଳା ଓ ପିଲାମାନଙ୍କୁ ମଧ୍ୟ ବିଭିନ୍ନ ମିଥ୍ୟା କେଶ୍ ଯଥା - ଡକାୟତି, ନିଆଁ ଲଗାଇବା କେଶ୍ ଦିଆଯାଇଛି ଓ ଅଧିକାଂଶଙ୍କୁ ଆରେଷ୍ଟ କରାଯାଇଛି। ବୁଲ୍‌କା ମିଣିଆକ୍କା PSSPର ସଭାପତି ଓ ଜଣେ ସମ୍ମାନଜନକ ବ୍ୟକ୍ତି। ତାଙ୍କୁ ୨ ଡିସେମ୍ବର ୨୦୦୪ରେ ଆରେଷ୍ଟ କରାଯାଇଥିଲା।

'ମୋ ଘରକୁ ହଠାତ୍ ପୋଲିସ ଆସିଲେ ଓ ମୋତେ ଆରେଷ୍ଟ କରିନେଲେ। ସେମାନେ କୁଆଡ଼େ ନେଉଛନ୍ତି କାହିଁକି ନେଉଛନ୍ତି କିଛି କହିଲେ ନାହିଁ। ସେମାନେ ମୋତେ ପ୍ରଥମେ କାଶୀପୁର ଓ ପରେ ରାୟଗଡ଼ା ନେଇଗଲେ। ମୁଁ ଏବେ ବେଲ୍‌ରେ ଜେଲ୍‌ରୁ ଆସିଛି। ଟିକିରି ପୋଲିସ ଅଧିକାରୀ କିଶୋର ମୁଣ୍ଡା ମୋତେ ଧମକ ଦେଲେ ଯେ ଯଦି ମୁଁ କୁଚେଇପଦରକୁ ଆସେ ତେବେ ପୁଣି ଜେଲ୍ ପଠାଇଦେବ।'

- ବୁଲ୍‌କା ମିଣିଆକ୍କା

ପ୍ରଫେସର ଭଗବତ୍ ପ୍ରସାଦ ରଥଙ୍କ ବକ୍ତବ୍ୟ ହେଲା 'PSSP ନେତୃବର୍ଗ ଓ ସାମାଜିକ କର୍ମୀମାନଙ୍କୁ ମିଥ୍ୟାକେଶରେ ପକାଇ ଜେଲ୍ ପଠାଯାଉଛି ଓ ହଇରାଣ କରାଯାଇଛି।' ଏହା ବ୍ୟତୀତ ସେ ନିଜେ ମଧ୍ୟ ମିଥ୍ୟାକେଶ୍‌ର ଶିକାର ହେଉଛନ୍ତି। ପ୍ରଫୁଲ୍ଲ ସାମନ୍ତରାଙ୍କ ବକ୍ତବ୍ୟ ହେଲା 'ମାଇକଞ୍ଚ ଗୁଳିକାଣ୍ଡ ପରେଣ୍ଟ୍ସମାନଙ୍କ ନାମରେ ମର୍ଡ଼ର କେଶ୍ ପୋଲିସ ତରଫରୁ ଦିଆଯାଇଛି। APDR ଓ PULL ଦଳ ନିଜ ଗସ୍ତ ସମୟରେ ଲୋକଙ୍କ ବକ୍ତବ୍ୟକୁ ମଧ୍ୟ ନିଜର ରିପୋର୍ଟରେ ଉଲ୍ଲେଖ କରିଛନ୍ତି। ଲୋକେ ହାଟକୁ, ଜମିକୁ ଓ ଅନ୍ୟ ଗାଁକୁ ଯିବା ପାଇଁ ଡରୁଛନ୍ତି, ରାସ୍ତା ଶୁନ୍‌ଶାନ୍ ହୋଇଯାଉଛି।

ସ୍ଥାନୀୟ କୋର୍ଟରେ ମଧ୍ୟ ଖଣିବିରୋଧୀ କର୍ମୀଙ୍କୁ ଜାଣି ଜାଣି ବେଲ୍ ଦେବାରେ ବିଳମ୍ବ କରାଯାଉଛି। PSSP ତରଫରୁ ଏହିପରି ୪୯ଜଣ ଲୋକଙ୍କ ଏକ ତାଲିକା ଦିଆଯାଇଛି ଯେଉଁମାନେ କି ଡିସେମ୍ବର ୧, ୨୦୦୪ରୁ ଜୁନ୍ ୨୫, ୨୦୦୫ ମଧ୍ୟରେ ଗିରଫ ହୋଇଛନ୍ତି। ଏହି ରିପୋର୍ଟ ଲେଖା ହେଲାବେଳକୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ୪-୮ ମାସ ଜେଲରେ ରହି ଫେରିଛନ୍ତି।

ଏ କ୍ଷେତ୍ରରେ କର୍ମୀମାନଙ୍କୁ ରାୟଗଡ଼ାରେ ଓକିଲ ମିଳିବା ମଧ୍ୟ କଷ୍ଟ ହେଉଛି। କେହି ସରକାର ଓ ଜିଲ୍ଲା ପ୍ରଶାସନର ବିରୋଧୀ ହେବାକୁ ଚାହୁଁନାହାନ୍ତି। ଗିରଫ ଲୋକଙ୍କୁ FIR କପି ମଧ୍ୟ ମିଳୁନାହିଁ। ଟ୍ରିବ୍ୟୁନାଲ ତରଫରୁ ରାୟଗଡ଼ା ଏସ୍.ପି.ଙ୍କ ନିକଟକୁ UAIL ସମ୍ବଳିତ ସମସ୍ତ କେଶ୍‌ରେ ଏକ ତାଲିକା ଦେବାପାଇଁ ଅନୁରୋଧ କରାଯାଇଥିଲା। ମାତ୍ର ତାହା SPଙ୍କ ତରଫରୁ ଦିଆଗଲା ନାହିଁ।

## ସମାଜର ଅନ୍ୟକର୍ମୀ ମଧ୍ୟ ଦମନର ଶିକାର

ବହୁ ବ୍ୟକ୍ତିବିଶେଷ, ସଙ୍ଗଠନ ଓ ସଂସ୍ଥାମାନେ ମଧ୍ୟ ପୋଲିସ ଓ ପ୍ରଶାସନର ଦମନର ଶିକାର ହୋଇଛନ୍ତି। ସ୍ଥାନୀୟ ସଂସ୍ଥା ଅଗ୍ରଗାମୀ ମଧ୍ୟ ଏପରି ଦମନରୁ ବାଦ ଯାଇନାହିଁ। (ଏହା ସହିତ ଆଉ ତିନୋଟି ସଂସ୍ଥାର ରେଜିଷ୍ଟ୍ରେସନକୁ ବାତିଲ କରିବା ପାଇଁ ରାଜ୍ୟ ସରକାର ଧମକ ଦେଇଥିଲେ)। ସେହିପରି ପ୍ରଫେସର ଭଗବତ ପ୍ରସାଦଙ୍କୁ ମିଥ୍ୟା କେଶ୍‌ରେ ଗିରଫ କରାଯିବା ପାଇଁ ପୋଲିସ ପକ୍ଷରୁ ଉଦ୍ୟମ କରାଯାଇଥିଲା। ସେ ରାୟଗଡ଼ା ସହରରେ କାଶୀପୁର ଆନ୍ଦୋଳନର ଏକମାତ୍ର ସମର୍ଥକ। ବରଗଡ଼ ଚାଷୀ ଆନ୍ଦୋଳନର ସାଥୀ ହର ବଣିଆଙ୍କୁ ମଧ୍ୟ ପୋଲିସକୁ ବାଧାଦେବା ଓ ଆଦିବାସୀଙ୍କୁ ଉସୁକାଇବା ଅଭିଯୋଗରେ ୨୯ ଡିସେମ୍ବର ୨୦୦୪ରେ ଜେଲ୍ ପଠାଇ ଦିଆଯାଇଥିଲା। (କାଶୀପୁର ଜନଆନ୍ଦୋଳନକୁ ସମସ୍ତ ସଙ୍ଗଠନମାନଙ୍କ ଠାରୁ ଦୂରେଇ ଦେବା ପାଇଁ ଏପରି ଉଦ୍ୟମ କରାଯାଇଥିଲା)।

## କେବଳ କାଶୀପୁରରେ ନୁହେଁ

କାଶୀପୁରରେ ଯେଉଁଭଳି ଦମନ କରାଗଲା ଏହା ବ୍ୟକ୍ତ କରିବା ଅସମ୍ଭବ। ଏକ ପ୍ରାଇଭେଟ କମ୍ପାନୀର ଖଣି ଓ ପ୍ଲାଣ୍ଟ୍ ପାଇଁ ଯେ ଏପରି ଦମନ କରାଯାଇପାରେ ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ।

'ଆଜି ଆଦିବାସୀମାନେ ନିଜ ଅଧିକାର ସମ୍ପର୍କରେ କିଛି ଚିନ୍ତା କଲେ ଓ କିଛି ଦାବୀ କଲେ ସେମାନଙ୍କୁ ମିଥ୍ୟା କେଶ୍‌ରେ ହଇରାଣ କରାଯାଉଛି। ଏହାଦ୍ୱାରା ମାନସିକ ଓ ଆର୍ଥିକ କ୍ଷେତ୍ରରେ ସେମାନଙ୍କୁ ଦୁର୍ବଳ କରିବା ପ୍ରଶାସନ ଓ ପୋଲିସର ଲକ୍ଷ୍ୟ। ଗଲା ୨୬ ଅଗଷ୍ଟ ୨୦୦୫ରେ ଗନ୍ଧମାର୍ଦ୍ଦନ ଅଞ୍ଚଳର ନିଜ ଜମି ଚାଲଯିବା ଡରରେ ସରକାରଙ୍କ ବନଷୌଧି ବନପ୍ରକଳ୍ପକୁ ବିରୋଧ କରିବା ହେତୁ ୧୧ଜଣ ମହିଳାଙ୍କୁ ଗିରଫ କରି ଜେଲ୍ ପଠାଇ ଦିଆଗଲା।' - ଗୁପ୍ତେଶ୍ୱର କୁଅଁର

'ବେଦାନ୍ତ କମ୍ପାନୀ ଲାଞ୍ଜିଗଡ଼ ଅଞ୍ଚଳରେ କିନାରୀ ଓ ବୋରଭଟା ଗ୍ରାମର ଲୋକଙ୍କୁ ଫେବୃଆରୀ ୨୦୦୪ରେ ଜୋର ଜବରଦସ୍ତ କଲୋନୀକୁ ପଠାଇଦେଇ ବୁଲଡୋଜର ଲଗାଇ ଘର ଭାଙ୍ଗି ଦିଆଗଲା। ସେମାନଙ୍କୁ କମ୍ପାନୀ ସଶସ୍ତ୍ର ସିକ୍ୟୁରିଟି ଦ୍ୱାରା କଲୋନୀ ଚାରିପଟେ ତାର ଜାଲି ବାଡ଼ ଦେଇ ଏକ ପ୍ରକାର ବନ୍ଦୀ କରି ରଖାଯାଇଥିଲା। ବାହାରୁ କାହାରି ସହିତ କଥା ହେବା ପାଇଁ ସୁଯୋଗ ଦିଆଯାଉ ନଥିଲା। ଏବେ ସୁପ୍ରିମକୋର୍ଟର ସି.ଇ.ସି ଦଳ ଆସିଗଲା ପରେ ସଶସ୍ତ୍ର ସିକ୍ୟୁରିଟିକୁ ହଟାଯାଇଛି।

ଆଜି ଅନ୍ୟକାହାକୁ ଆଉ ବୁଝିବାକୁ ବାକିରହିଲା ନାହିଁ। ଓଡ଼ିଶାରେ ବକ୍ସାଇଟ୍ ଖଣି କହିଲେ ବିକାଶ ଅପେକ୍ଷା ଏହାର ପ୍ରକଳ୍ପ ଅଞ୍ଚଳରେ ମାତ୍ରାଧିକ ଗିରଫ, ଭୟ, ଆତଙ୍କ ଓ ସ୍ଥାନୀୟ ଲୋକଙ୍କ ମୃତ୍ୟୁ : ଏହା ନୁହେଁ ତ ଆଉ କ'ଣ?

ଟ୍ରିବ୍ୟୁନାଲ ଇତିମଧ୍ୟରେ ନିଜ ଦ୍ୱାରା ସଂକଳିତ ସମସ୍ତ ତଥ୍ୟର ଆଧାରରେ ଏହି ପ୍ରସ୍ତାବ ଦେଉଛି ଯେ,

କାଶୀପୁରଠାରେ UAIL ର ସମସ୍ତ ବେନିୟମ କାମ କରାଯାଇଥିବା ହେତୁ ଓ ଏହି ପ୍ରକଳ୍ପର ସାମାଜିକ ଓ ପରିବେଶ ପ୍ରଭାବ ସମ୍ପର୍କରେ ଏହି ରିପୋର୍ଟରେ ଯାହା ଉଲ୍ଲେଖ ରହିଛି ସେହି ଅନୁସାରେ ଓଡ଼ିଶା ସରକାର ଓ କେନ୍ଦ୍ର ସରକାର ତୁରନ୍ତ UAILର ପ୍ରକଳ୍ପକୁ ବନ୍ଦ କରିବା ପାଇଁ ପଦକ୍ଷେପ ନିଅନ୍ତୁ।

## ପରିବେଶ

ଓଡ଼ିଶା ରାଜ୍ୟ ପ୍ରଦୂଷଣ ବୋର୍ଡ଼ କେନ୍ଦ୍ରୀୟ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ UAILକୁ ଦିଆଯାଇଥିବା ପରିବେଶ ଅନୁମତି ଓ କାରଖାନା ପ୍ରତିଷ୍ଠା କରିବାର ଅନୁମତିକୁ ତୁରନ୍ତ ବାତିଲ କରନ୍ତୁ।

ପରିବେଶ ସଂକ୍ରାନ୍ତ ସମସ୍ତ ଦରଖାସ୍ତ ଓ ନିର୍ଦ୍ଦେଶକୁ ସର୍ବସାଧାରଣରେ ଜାଣିବା ପାଇଁ ସୁଯୋଗ ଦିଆଯାଉ

UAILକୁ ଏହାର କାରଖାନା ବନ୍ଦ କରିବା ପାଇଁ ଓ ଖଣି ଖୋଳିବା କାମ ବନ୍ଦ ପାଇଁ ନିର୍ଦ୍ଦେଶ ଦିଆଯାଉ

ଓଡ଼ିଶା ରାଜ୍ୟ ପ୍ରଦୂଷଣ ବୋର୍ଡ଼ର କାର୍ଯ୍ୟ ଜାତୀୟ ପ୍ରଦୂଷଣମାନାଙ୍କ ଅନୁସାରେ ଏହାର ସାମର୍ଥ୍ୟ ସମ୍ପର୍କରେ ଅନୁଧାନ କରାଯାଉ ଓ ଯଦି ପ୍ରଦୂଷଣ ବୋର୍ଡ଼ର ସାମର୍ଥ୍ୟ କମ୍ ଥାଏ ତେବେ ତାକୁ ଉନ୍ନତ କରିବା ପାଇଁ ପଦକ୍ଷେପ ନିଆଯାଉ

## ସରକାରୀ ଦମନ

ଅର୍ଦ୍ଧ ସାମରିକ ବାହିନୀ ଓ ପୋଲିସ ବାହିନୀକୁ ସେ ଅଞ୍ଚଳରୁ ହଟାଇ ନିଆଯାଉ ଓ ୧୯୯୨ର ପୂର୍ବସ୍ଥିତିକୁ ଫେରାଇ ଅଣାଯାଉ

ମାଇକଞ୍ଚ ଗୁଳିକାଣ୍ଡରେ ଦୋଷୀ ସମସ୍ତ ପୋଲିସ ଅଫିସରଙ୍କୁ ଦଣ୍ଡିତ କରାଯାଉ।

ଅତି ଶୀଘ୍ର ଏକ ତଦନ୍ତ କରାଯାଉ ଓ ଯେଉଁ ପୋଲିସ ଅଫିସରମାନେ ରାଷ୍ଟ୍ରର ଓ ରାଜ୍ୟର ନିୟମ ଉଲ୍ଲଂଘନ କରିଛନ୍ତି ସେମାନଙ୍କୁ ଦଣ୍ଡିତ କରାଯାଉ।

ମିଥ୍ୟାକେଶ୍‌ରେ ଜଡ଼ିତ କରିଥିବା ସମସ୍ତ କର୍ମୀଙ୍କୁ ମୁକ୍ତ କରାଯାଉ ଓ ସେମାନଙ୍କ ବିରୁଦ୍ଧରେ ଜାରୀ ହୋଇଥିବା ୱାରେଣ୍ଟକୁ ରଦ୍ଦ କରାଯାଉ।

ସ୍ଥାନୀୟ ସଙ୍ଗଠନ ଦ୍ୱାରା କରାଯାଉଥିବା ଶାନ୍ତିପୂର୍ଣ୍ଣ ର୍‍ୟାଲି, ସାଧାରଣ ସଭା ଓ ଧାରଣାକୁ

ସୁରକ୍ଷା ଦିଆଯାଉ

ପୋଲିସ ଓ ଅର୍ଦ୍ଧସାମରିକ ବାହିନୀ ଦ୍ୱାରା ଯେଉଁମାନେ ଅତ୍ୟାଚାରିତ ହେଲେ ସେମାନଙ୍କ କଥାକୁ ବିଚାରକୁ ନିଆଯାଉ

## ବେନିୟମ ଭାବେ ଜମି ଅକ୍ତିଆର

କାଶୀପୁର ଅଞ୍ଚଳରେ ଆଦିବାସୀଙ୍କୁ 'ଅଣତାଲିକା ଭୁକ୍ତ' କରାଯାଉଥିବା ପଦକ୍ଷେପକୁ ବନ୍ଦ କରିବା ସହିତ ଭାରତର ଅନ୍ୟ ଅଞ୍ଚଳରେ ମଧ୍ୟ ଏପରି ପଦଯେପରୁ କ୍ଷାନ୍ତ ହୁଅନ୍ତୁ

UAIL ଦ୍ୱାରା ଆଜିପର୍ଯ୍ୟନ୍ତ କରାଯାଇଥିବା ସମସ୍ତ ଜମି ଅଧିଗ୍ରହଣ ପ୍ରକ୍ରିୟାକୁ ବେନିୟମ ବୋଲି ଓଡ଼ିଶା ସରକାର ଘୋଷଣା କରନ୍ତୁ।

ଆଦିବାସୀ ଜମି ଅଣ ଆଦିବାସୀ ଜମି ହାତକୁ ହସ୍ତାନ୍ତର କରିବା ବିରୁଦ୍ଧରେ ଥିବା ନିୟମକୁ ଭାରତ ସରକାର ଓ ଓଡ଼ିଶା ସରକାର କଡାକଡ଼ି ଭାବେ ପାଳନ କରନ୍ତୁ।

କୌଣସି ବି ନିଜସ୍ୱ କମ୍ପାନୀ ନିଜର ଜମି ଅଧିଗ୍ରହଣ ଆଗରୁ ଲୋକଙ୍କ ମତ ନେବା ସମୟରେ ପ୍ରକଳ୍ପ ସମ୍ବନ୍ଧରେ ସମସ୍ତ ତଥ୍ୟ ଯେମିତି ସ୍ଥାନୀୟ ଲୋକଙ୍କ ପାଖରେ ପହଞ୍ଚିପାରିବ ସେ ଦିଗରେ ଓଡ଼ିଶା ସରକାର ପଦକ୍ଷେପ ନିଅନ୍ତୁ।

ଓଡ଼ିଶା ସରକାର ନିଜେ UAILଠାରୁ ପ୍ରକଳ୍ପ ଅଞ୍ଚଳର ଗ୍ରାମସଭାର ଅନୁମତି ସମ୍ପର୍କରେ ଲିଖିତ ପ୍ରମାଣ ମାଗନ୍ତୁ ଓ ଏହି ପ୍ରମାଣ ପତ୍ର ପୋଲିସର ଅନୁପସ୍ଥିତିରେ ପ୍ରକଳ୍ପ ବିଷୟରେ ସମସ୍ତ ତଥ୍ୟ ଯଥା : ଏହାର ପ୍ରଭାବ, ପ୍ରକଳ୍ପ ରିପୋର୍ଟ ଇତ୍ୟାଦି ସରକାରଙ୍କୁ ଜଣାଇ ଗ୍ରାମସଭାର ଅନୁମତି ନେବା ଆବଶ୍ୟକ।

ଏଭଳି ପ୍ରକ୍ରିୟାରେ ସଚେତନ ନାଗରିକ ସମାଜର ସଦସ୍ୟ ଓ ଜାତୀୟ ମାନବିକ ଅଧିକାର କମିଶନଙ୍କ ସଦସ୍ୟ ଉପସ୍ଥିତ ରହିବେ।

## ଥଇଥାନ ନୀତି

UAIL କମ୍ପାନୀ ଯେଉଁଭଳି ଲୋକଙ୍କୁ ଭୟଭୀତ କରି ଓ ବାଧ୍ୟକରି କ୍ଷତିପୂରଣ ଦେଉଛି ସେଭଳି କାମରୁ ନିବୃତ୍ତ ରହୁ

ଭାରତ ସରକାର ଥଇଥାନ ନୀତିର କେବଳ ଜମି ହରାଉଥିବା ଲୋକଙ୍କୁ ନୁହେଁ ସେମାନଙ୍କ ସହିତ ପ୍ରକଳ୍ପ ଦ୍ୱାରା ପରିବେଶ ପ୍ରଦୂଷଣ ହେତୁ ଓ ଅନ୍ୟମାନଙ୍କୁ ମଧ୍ୟ ପ୍ରକଳ୍ପ ଦ୍ୱାରା କ୍ଷତିଗ୍ରସ୍ତ ପରିବାର ଭାବରେ ଗ୍ରହଣ କରି ସେମାନଙ୍କୁ ମଧ୍ୟ ସମାନ ସୁବିଧା ଦିଆଯାଉ।

ଭାରତ ସରକାର ଏହିଭଳି ଥଇଥାନ ନୀତି ବିସ୍ଥାପିତ ପରିବାର ଓ ପ୍ରକଳ୍ପରେ କ୍ଷତିଗ୍ରସ୍ତ ପରିବାର ଗ୍ରହଣ କଲାବେଳେ ଆଇନଗତ ସାହାଯ୍ୟ ଯୋଗାଇଦେବା ଦରକାର।

ଭାରତ ସରକାର ଏ ଦିଗରେ ଦୃଷ୍ଟିକୋଣ ଦେବା ଦରକାର ଯେ ସମସ୍ତ ଅଇଥାନ ଚୁକ୍ତି ଲିଖିତ ଆକାରରେ ହେବା ଆବଶ୍ୟକ ଯାହାକି ନିୟମଦୃଷ୍ଟିରୁ ଉଭୟପକ୍ଷ ମାନିବାକୁ ବାଧ୍ୟ।

ବିସ୍ଥାପିତ ପରିବାର ଓ କ୍ଷତିଗ୍ରସ୍ତ ପରିବାରକୁ କ୍ଷତିପୂରଣ ଦେବା ସମୟରେ ବର୍ତ୍ତମାନର ଜନଗଣନାକୁ ଦୃଷ୍ଟିରେ ରଖାଯିବା ଦରକାର। ଏ ସମ୍ପର୍କରେ ଅର୍ଥନୈତିକ ସର୍ଭେ କରାଯାଇ ସରକାରୀ ତଦାରଖ ମଧ୍ୟରେ ପ୍ରକୃତ କ୍ଷତିଗ୍ରସ୍ତ ଓ ବିସ୍ଥାପିତ ପରିବାରକୁ ଚିହ୍ନଟ କରାଯିବା ଦରକାର।

## ଖଣି ଓ ବିସ୍ଥାପନ

ଓଡ଼ିଶା ସରକାର ନିଜେ UAIL ପ୍ରକଳ୍ପର ନିରପେକ୍ଷ ଭାବରେ ଏହାର ବିଭିନ୍ନ ଆର୍ଥିକ ଦିଗ ସମ୍ପର୍କରେ ଅନୁଶୀଳନ ଓ ଆକଳନ କରନ୍ତୁ

ଓଡ଼ିଶା ସରକାର ନିଜେ ଏହି ସମଗ୍ର ଅଞ୍ଚଳରେ ଆସୁଥିବା ସମସ୍ତ ପ୍ରକଳ୍ପର ଖଣି ଓ ପ୍ଲାଣ୍ଟ ଅଞ୍ଚଳର ପରିବେଶ, ଆର୍ଥିକ ଓ ସାମାଜିକ ପ୍ରଭାବ ସମ୍ପର୍କରେ ଅନୁଶୀଳନ କରନ୍ତୁ।



## ଓଡ଼ିଶାରେ ପ୍ରସ୍ତାବିତ ଇସ୍ପାତ ପ୍ରକଳ୍ପ

| କ୍ର.ନଂ. | ପ୍ରକଳ୍ପର ନାମ ଓ ସ୍ଥାନ | ବ୍ୟୟ ଅଟକଳ | ବାର୍ଷିକ ଉତ୍ପାଦନ | ନିଯୁକ୍ତି ସମ୍ଭାବନା |
|---|---|---|---|---|
| ୧. | ମିଡ଼-ଇଷ୍ଟ ଇଣ୍ଟିଗ୍ରେଟେଡ୍ ଷ୍ଟିଲ ଲିମିଟେଡ଼, ଡୁବୁରୀ | ୩୧୦ କୋଟି ଟଙ୍କା (ପ୍ରଥମ ପର୍ଯ୍ୟାୟ) | ୫ ଲକ୍ଷ ଟନ୍ | ୬୦୦ |
| ୨. | ମେଷ୍କୋ କଳିଙ୍ଗ ଷ୍ଟିଲ ଲିମିଟେଡ଼, ଡୁବୁରୀ | ୨୬୦୦ କୋଟି ଟଙ୍କା (ପ୍ରଥମ ପର୍ଯ୍ୟାୟ) | ୨୨.୫ ଲକ୍ଷ ଟନ | ୨,୫୦୦ |
| ୩. | ଭୂଷଣ ଷ୍ଟିଲ ଆଣ୍ଡ ଷ୍ଟ୍ରିପ୍ସ | ୧୮୫୦ କୋଟିଟଙ୍କା | ୧୨ ଲକ୍ଷ ଟନ୍ | ୧୫୦୦ |
| ୪. | ବ୍ରାହ୍ମଣୀ ଆଇରନ ଆଣ୍ଡ ଷ୍ଟିଲ୍ କମ୍ପାନୀ | ୯୬୧ କୋଟିଟଙ୍କା | ୫ ଲକ୍ଷ ଟନ୍ | ୧୦୦୦ |
| ୫. | ଓରିଶ ଷ୍ଟିଲ୍ ଲିମିଟେଡ଼, ଡୁବୁରୀ | ୯୫୦ କୋଟିଟଙ୍କା | ୫ ଲକ୍ଷ ଟନ୍ | ୧୧୦୦ |
| ୬. | ନୀଳାଚଳ ଇସ୍ପାତ ନିଗମ ଲିମିଟେଡ୍, ଡୁବୁରୀ | ୨୩୫୦ କୋଟି ଟଙ୍କା | ୧୦ଲକ୍ଷ ଟନ୍ | ୨୫୦୦ |
| ୭. | ଗଣପତି ଏକ୍ସପୋର୍ଟସ୍ ଷ୍ଟିଲ୍ ଲିମିଟେଡ଼, ଡୁବୁରୀ | ୭୫୪୫ କୋଟି ଟଙ୍କା | ୩୦୦୦ | |
| ୮. | ଇଣ୍ଡିଆନ ସିମଲେସ୍ ଷ୍ଟିଲ୍ ଆଣ୍ଡ ଆଲଏଜ ଲିମିଟେଡ଼, ନୟାଗଡ଼ (କେଉଁଝର) | ୮୦୦୦ କୋଟି ଟଙ୍କା | ୧୫ ଲକ୍ଷ ଟଙ୍କା | ୩୯୯୭ |
| ୯. | ନ୍ୟାସନାଲ ଷ୍ଟିଲ୍ ଇଣ୍ଡଷ୍ଟ୍ରିଜ୍ ଲିମିଟେଡ୍, ନୟାଗଡ଼ (କେଉଁଝର) | ୧୮୪୩ କୋଟି ଟଙ୍କା | ୫ ଲକ୍ଷ ଟନ୍ | ୧୨୦୦ |
| ୧୦. | ଏସିଆନ୍ ଆଲଏଜ୍ ଲିମିଟେଡ଼, ବିଲେଇପଦା (କେନ୍ଦୁଝର) | ୬୦୦ କୋଟି ଟଙ୍କା | ୫ ଲକ୍ଷ ଟନ୍ | ୧୨୦୦ |
| ୧୧. | ଟିସ୍କୋ ଲିମିଟେଡ଼, ଗୋପାଳପୁର (ଗଞ୍ଜାମ) | ୬୦୦୦ କୋଟି ଟଙ୍କା (ପ୍ରଥମ ପର୍ଯ୍ୟାୟ) | ୨୫ ଲକ୍ଷ ଟନ୍ | ହିସାବ ମିଳିନାହିଁ |
| ୧୨. | ଲାର୍ସନ ଆଣ୍ଡ ଟୁବ୍ରୋ, ଗୋପାଳପୁର (ଗଞ୍ଜାମ) | ୬୦୦୦ କୋଟି ଟଙ୍କା | ୨୬ ଲକ୍ଷ ଟନ୍ | ୧୫୦୦ |
| ୧୩. | ଜିନ୍ଦାଲ ଷ୍ଟ୍ରିପ୍ସ ଲିମିଟେଡ଼ | ୧୭୦୦ କୋଟି ଟଙ୍କା | ୫ ଲକ୍ଷ ଟନ୍ | ହିସାବ ମିଳିନାହିଁ |

ପ୍ରାପ୍ତିସ୍ଥାନ : ଗାଉଁଲି ବିଚାର, ଡୁପ୍ଲେକ୍ସ-୫, ଶୈଳଶ୍ରୀ ବିହାର, ଭୁବନେଶ୍ୱର - ୭୫୧୦୧୬

ଫୋନ :- ୦୬୭୪-୪୪୦୪୭୪

**Published by : *Gaunli Vichar,***

Duplex - 5, Sailashree Vihar, Bhubaneswar 

Phone 440474 and Printed at Laxmi Printer, Bhubaneswar.